# ଶାରଳାଚରିତ ।

ଶ୍ରୀ ମୃତ୍ୟୁଞ୍ଜୟ ରଥ ପ୍ରଣୀତ ।

# A Life

OF

## SARALA DAS

BY

*Mrutyunjoy Rath.*

**1911.**

*Price 4 annas.*

# ମୁକୁର

ମାସିକ ପତ୍ର

ବାର୍ଷିକ ମୂଲ୍ୟ ଦୁଇ ଟଙ୍କା ମାତ୍ର । ଛାତ୍ରମାନଙ୍କ ନିମନ୍ତେ ଏକ ଟଙ୍କା ମାତ୍ର ।

ମୁକୁର ପ୍ରେସରେ ସର୍ବ ପ୍ରକାର ପୁସ୍ତକ ଛପାଇ ମିଳେ ଏବଂ ଓଡ଼ିଆ, ବଙ୍ଗଳା, ଦେବନାଗରୀ, ଏବଂ ଇଂରେଜି ଅକ୍ଷରରେ ସବୁ ପ୍ରକାର ପୁସ୍ତକ, ପାଉଇ, ଫାରମ, ଓ ନିମନ୍ତ୍ରଣ ପତ୍ର ଛପାଇ ସୁନ୍ଦରରୂପେ ଏବଂ ଶସ୍ତା ଦରରେ ମିଳେ ।

ସତ୍ତ୍ୱାଧିକାରୀ ଏବଂ ସମ୍ପାଦକ
ଶ୍ରୀ ବ୍ରଜ ସୁନ୍ଦର ଦାସ, ବି. ଏ.

---

ଶ୍ରୀ ମୃତ୍ୟୁଞ୍ଜୟ ରଥ ପ୍ରଣୀତ ପୁସ୍ତକାବଳୀ—

| | | |
|---|---|---|
| ମୁଦ୍ରାରାକ୍ଷସ— | (ନାଟକ) | ମୂଲ୍ୟ ଟ ୦ ୳ ଏବଂ ଟ ୦ ୳୵ |
| ବିକ୍ରମୋର୍ବଶୀ | (ନାଟକ) | ଟ ୦ । |
| ପ୍ରବନ୍ଧପାଠ | (Matriculation text book) | ଟ ୦' ୳ |
| ନଗଜ | (କାବ୍ୟ) | ଟ ୦ ୷ |
| ମୂଳ ଶବ୍ଦ ବୋଧିକା | | ଟ ୦ ୷ |



ଶାରଳା କବ ଭକ୍ତ

ଭକ୍ତିଭାଜନ ଗୁରୁଦେବ

## ଶ୍ରୀ ମଧୁସୂଦନ ରାଓଙ୍କ

କରକମଳରେ

ଅର୍ପିତ ହେଲା ।

# ପ୍ରବେଶକ ।



ପ୍ରାଚୀନ ତଥା ନବୀନ ଉତ୍କଳସାହିତ୍ୟରେ କଳ୍ପନା ବିଳାସର ପ୍ରାଚୁର୍ଯ୍ୟ ଯେପରି ସାଧାରଣ ସତ୍ୟାନୁସନ୍ଧିତ୍ସା ବା ଐତିହାସିକ ତଥ୍ୟ ନିରୂପଣରେ ପ୍ରଗାଢ଼ ନିଷ୍ଠା ବା ଶ୍ରମ ସେପରି ସୁଲଭ ନୁହେ । ଯାହା ଦୁର୍ଲ୍ଲଭ ତାହାହିଁ ସ୍ପୃହଣୀୟ—ସାରଳାଚରିତ ପୁସ୍ତକ ଖଣ୍ଡି ସେହି ଶ୍ରେଣୀର । ସାରଳା ଚରିତରେ ଲେଖକ ସୁଦୂର ଅତୀତର ପ୍ରଗାଢ଼ ଅନ୍ଧତମ ଭେଦ କରି ନିଭୃତତମ ପ୍ରଦେଶରୁ କେତେକ ଗୁଢ଼ ସତ୍ୟରତ୍ନ ଆହରଣ କରି ଅସ୍ମମାନଙ୍କର ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି । ଅସ୍ମମାନଙ୍କ ଦେଶରେ ଇତିହାସ (ମାଦଳାପାଞ୍ଜି ବ୍ୟତୀତ) ଲେଖିବା ବା ଜୀବନୀ ଲେଖିବା ପଦ୍ଧତି ପୂର୍ବରୁ ନ ଥିଲା । କବିମାନେ ନିଜ ନିଜ କାବ୍ୟରେ କଦାଚିତ୍ ଆତ୍ମ ବିବୃତି ବା ଆତ୍ମପରିଚୟ ପ୍ରଦାନ କରୁଥିଲେ, କିନ୍ତୁ ତାହା ଅନେକ ସ୍ଥଳରେ ଏପରି ସ୍ଥୂଳ ଯେ ତହିଁରୁ କବିଙ୍କର ସମସ୍ତ ଘଟନାପୂର୍ଣ୍ଣ ଜୀବନୀର ଅତି ସ୍ୱଳ୍ପ ଆଭାସ ମିଳେ । ଲେଖକ ଅଶେଷ ଯତ୍ନରେ, ଓ ଗଭୀର ଗବେଷଣା ପୂର୍ବକ ଇତିହାସ, କିମ୍ବଦନ୍ତୀ ପ୍ରଭୃତିର ଓ କବିଙ୍କ ନିଜ କଳ୍ପନା ସାହାଯ୍ୟରେ-ସାରଳାଦାସଙ୍କର ସର୍ବାଙ୍ଗ ସୁନ୍ଦର ଜୀବନୀ ଗୋଟିଏ ରଚନା କରିଛନ୍ତି । ପୁସ୍ତକଟିର ସମାଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେ । ପୁଙ୍ଖାନୁପୁଙ୍ଖରୂପେ ଦେଖିଲେ କୌଣସି ସ୍ଥାନରେ ଭ୍ରମ ଦୃଷ୍ଟିଗୋଚର ହୋଇପାରେ । କିନ୍ତୁ ତାହା ବୋଲି ପୁସ୍ତକ ଖଣ୍ଡି ପ୍ରମାଦପୂର୍ଣ୍ଣ ନୁହେ । କେବଳ ଦୋଷ ବହୁଳ ନୁହେ ବୋଲି ଯେ ଏହା ସ୍ପୃହଣୀୟ ଅସ୍ମେମାନେ ତାହା କହୁ ନାହୁଁ—ଏହା ଉତ୍କଳ ସାହିତ୍ୟରେ ପ୍ରଥମ ଦୀର୍ଘତମ ଧାରାବାହିକ ଜୀବନୀ । ଏହି ହେତୁ ଏହା ଅସ୍ମମାନଙ୍କପାଖରେ ଆଦରଣୀୟ । ପୂର୍ବରୁ କେହି କେହି କବିମାନଙ୍କ କ୍ଷୁଦ୍ର କ୍ଷୁଦ୍ର ଜୀବନୀ ପତ୍ରିକାଦିରେ ଲେଖିଛନ୍ତି ସତ୍ୟ—ତାହା ସବୁ

ପ୍ରାୟ ଅପୂର୍ଣ୍ଣ । କିନ୍ତୁ ଏ ପୁସ୍ତକ ଖଣ୍ଡି ଭିନ୍ନ ଧାତର । ଏଥିରେ କବିଙ୍କର ବାଲ୍ୟଜୀବନ, ବିଦ୍ୟାଶିକ୍ଷା, କବିତ୍ୱସ୍ଫୂର୍ତ୍ତି ଧର୍ମ୍ମଭାବ ପ୍ରଭୃତିର ବିଶଦ ଆଲୋଚନା ହୋଇଅଛି । ପୁଣି କବିଙ୍କର ରଚିତ ମହାଭାରତର ଗୋଟିଏ ସୁନ୍ଦର, ସରଳ ଏବଂ ସଂକ୍ଷିପ୍ତ ସମାଲୋଚନା ଯୋଗ କରି ହୋଇଅଛି । ସମାଲୋଚନାଟି ଏପରି ପ୍ରୀତିପ୍ରଦ ଯେ ପୁସ୍ତକ ପଢି ସମାଲୋଚନାଟି ନ ପଢିଲେ ମନର ଶାନ୍ତି ହୁଏ ନାହିଁ । ତହିଁରୁ ଅନେକ ଶିକ୍ଷିବାର ଅଛି । ଶାରଳା ମହାଭାରତ ପାଠକ ମାନଙ୍କର ଏହା ସର୍ବ୍ବପ୍ରଥମେ ପଢିବା ଉଚିତ । ଏଖଣ୍ଡି ପଢିଲେ ପାଠକେ 'ବ୍ୟାସଙ୍କୁ' 'ଦାସ' କେତେ ଅନ୍ତର ବୁଝିପାରିବେ । ମୋର ବିଶ୍ୱାସ ଉତ୍କଳ ପାଠକ ସାଧାରଣ ଏ ପୁସ୍ତକ ଖଣ୍ଡିର ଉପଯୁକ୍ତ ଆଦର କରିବେ ।

କଟକ ।
୧୭—୧—୧୧

ଶ୍ରୀ ବ୍ରଜସୁନ୍ଦରଦାସ




ଉପକ୍ରମଣିକା ।

ଭାରତବାସୀ ଇତିହାସ ଲେଖାରେ ଚିରକାଳ ଅନଭ୍ୟସ୍ତ । ତେଣୁ ସଂସ୍କୃତ ସାହିତ୍ୟରେ ଜୀବନଚରିତର ଏକାନ୍ତ ଅଭାବ ଲକ୍ଷିତ ହୁଏ । ତାହା ବୋଲି ଯେ ସର୍ବବିଧ ଜ୍ଞାନର ଅଦ୍ଵଲୀଳାଭୂମି ଏହି ଭାରତବର୍ଷରେ ଧ୍ୟାନ ଧାରଣାଶୀଳୀ ଆର୍ଯ୍ୟଗଣଙ୍କ ଦ୍ଵାରା ସାମାନ୍ୟଶ୍ରମସାଧ୍ୟ ଜୀବନଚରିତ ଆଦୌ ଲିଖିତ ହୋଇନାହିଁ, ଏମନ୍ତ ନୁହେ । ପ୍ରାଚୀନ ଆର୍ଯ୍ୟମାନେ ଅଧୁନିକରୀତିରେ ଜନ୍ମମରଣାଦିର ବର୍ଷମାସଦିନ ନିର୍ଦ୍ଦେଶପୂର୍ବକ ଜୀବନଚରିତ ଲେଖିବାକୁ ଶ୍ରେୟସ୍କର ମଣୁ ନଥିଲେ; ସେମାନେ ସେହି ସବୁ ଅବାନ୍ତରକଥା ପରିତ୍ୟାଗ କରି ଜୀବନର ଯାହା ଶ୍ରେୟାଂଶ ଅର୍ଥାତ୍ ଯାହା ମୃତ୍ୟୁର ପୂର୍ବ ଏବଂ ପର କାଳରେ ଏକାପରି ଥାଏ, କେବଳ ତାହା ବିବୃତ କରୁଥିଲେ । କାରଣ ସେମାନେ ଏହା ଦୃଢରୂପେ ଜାଣିଥିଲେ ଯେ କାଳପରି ଯଥାର୍ଥ ଇତିହାସ ଲେଖକ ଆଉ କେହି ନାହିଁ । ତାହାଦ୍ଵାରା ଯାହା ଗୃହୀତ ହୋଇନାହିଁ ସେକଥା ଲେଖି ଫଳ କଣ ? ଲୋକଶିକ୍ଷାର୍ଥ ମହାପୁରୁଷମାନଙ୍କର ଗୁଣଗ୍ରାମ ଓ କୀର୍ତ୍ତିକଲାପର ସବିସ୍ତାର ବର୍ଣ୍ଣନ ଏବଂ ଆଦର୍ଶ ଚରିତର ମହତ୍ତ୍ଵ ପ୍ରଦର୍ଶନ ସେମାନଙ୍କ ଦ୍ଵାରା ରଚିତ ମାନବଚରିତର ପ୍ରତିପାଦ୍ୟ ବିଷୟ । ପୁରାଣରେ ଏପ୍ରକାର ବିଷୟମାନ ବିବୃତ

ଏବଂ ସୁରକ୍ଷିତ ହୋଇଥିବାରୁ ସଂସ୍କୃତରେ ପୁରାଣାଦିକୁ ଇତିହାସ ଆଖ୍ୟା ପ୍ରଦାନ କରାଯାଇଅଛି । ଏହି ପୁରାଣାଦି ଅସ୍ମମାନଙ୍କ ପ୍ରାଚୀନ ସମାଜର ଇତିହାସ ରୂପେ ରକ୍ଷିତ ହୋଇଥିଲେ ହେଁ ତାହା ଆଧୁନିକ ଇତିହାସ ଲକ୍ଷଣାକ୍ରାନ୍ତ ନୁହେ । ସେଥିରେ ଅତିରଞ୍ଜନ ଏବଂ ଅମାନୁଷୀକ୍ରିୟା ବର୍ଣ୍ଣନର ମାତ୍ରା ଯେପରି ସୀମାଃତୀତ, ବର୍ଣ୍ଣିତ ଘଟନାବଳୀର କାଳନିରୂପଣର ଅଭାବ ସେହିପରି ଅଶାତୀତ । ବ୍ୟକ୍ତି ବିଶେଷର ଅନ୍ଧ ମାସ ଛଡ଼ିବାକୁ ଅଭ୍ୟାସ କରୁକରୁ ଶେଷରେ ଅର୍ଯ୍ୟମାନେ ସମାଜର ଇତିହାସକୁ ଏତେ ବିଶୃଙ୍ଖଳ କରି ପକାଇଲେ ଯେ, ଅନେକସ୍ଥଳରେ ବର୍ଣ୍ଣିତ ଘଟନାବଳୀର ଅଗ୍ରପଶ୍ଚାତ୍ ଜାଣିବାର ଉପାୟ ନାହିଁ । ଫଳତଃ ସେମାନେ ବ୍ୟକ୍ତି ଏବଂ ସମାଜର ଇତିହାସର ଅତ୍ୟନ୍ତ ଘଟନାବଳୀ ଅନୁପୂର୍ବିକଭାବରେ ନ ଲେଖି ଭବିଷ୍ୟତ୍ ବଂଶଧରମାନଙ୍କୁ ଘୋର ଅନ୍ଧକାରରେ ଅବା ମୋହଜାଲରେ ନିକ୍ଷିପ୍ତ କରି ଅଛନ୍ତି ।

ବସ୍ତୁତଃ ଅସ୍ମମାନଙ୍କ ଦେଶର ଏବଂ ସମାଜର ଅତୀତ ଅନ୍ଧକାରମୟ । ତଥାପି ଏହି ଅନ୍ଧକାର ଗର୍ଭରେ ଅସ୍ମେମାନେ ତାମ୍ରଲିପି ଶିଳାଲିପି ପ୍ରାଚୀନ ଦେବାଳୟାଦିର ଭଗ୍ନାବଶେଷ କିଂବଦନ୍ତୀ ପ୍ରଭୃତି ମଣିର ଜ୍ୟୋତି ସାହାଯ୍ୟରେ ଅତୀତର ଯତ୍କିଞ୍ଚିତ୍ ଅଭାସ ପାଉଅଛୁଁ । ଏହିସବୁ, ଅତୀତ ବିଷୟ ଜାଣିବା ପାଇଁ ଅସ୍ମମାନଙ୍କର ସମ୍ବଳ । ଅତଏବ ଅତୀତ ବିଷୟମାନ ଆଧୁନିକ ଇତିହାସ ଲକ୍ଷଣାକ୍ରାନ୍ତ କରିବାକୁ ହେଲେ ଲେଖକମାନଙ୍କୁ ଅତେ ଏହିସବୁର ସାହାଯ୍ୟରେ ଏବଂ ପୁରାଣକାବ୍ୟନାଟକାଦିର ପାଠ ଦ୍ୱାରା ସତ୍ୟାସତ୍ୟ ସଂଗ୍ରହ କରିବାକୁ ହେବ । ଯେ ଯେତିକି

ଯେ ବିଷୟରେ ଅଧିକ ଅଗ୍ରସର ହେବେ ସେ ତେତିକ କୃତକାର୍ଯ୍ୟ ହେବେ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଏପ୍ରକାର ସୁବିଧା ଲେଖକଙ୍କୁ ସବୁସ୍ଥଳରେ ମିଳେ ନାହିଁ । ଯେଉଁ ସ୍ଥଳରେ ଏପରି ଅଭାବ ପଡ଼େ, ସେଠାରେ ଇତିହାସ ଲେଖକମାନେ ଅନୁମାନଦ୍ୱାରା ଗୋଟିଏ ସିଦ୍ଧାନ୍ତ କରିଥାନ୍ତି; ମାତ୍ର ସେପ୍ରକାର ନିର୍ଣ୍ଣୟ ଉପରେ ବିଶ୍ୱାସ ସ୍ଥାପନ କରିବା ନିରାପଦ ନହେ । କାରଣ ପ୍ରମାଣାନ୍ତର ମିଳିବା ପର୍ଯ୍ୟନ୍ତ ତାହାର ସ୍ଥିରତା । ଏହିପରି ଅନୁମାନ କରି ଲେଖିବାଦ୍ୱାରା ଐତିହାସିକମାନେ ଅନେକସ୍ଥଳରେ ଆମ୍ଭମାନଙ୍କୁ ଭ୍ରମରେ ପକାଇଥାନ୍ତି, ବିଶେଷତଃ ବୈଦେଶିକ ଲେଖକମାନେ ଏ ଦେଶର ଇତିହାସ ସଂଗ୍ରହ କରି ଥିବାରୁ ସେମାନେ ଅନେକ ସ୍ଥାନରେ ଲୌକିକ ସାହାଯ୍ୟ ଏବଂ ପ୍ରମାଣର ଅଭାବରୁ ଅନୁମାନ କରି ଅନେକ କଥା ଲେଖିଅଛନ୍ତି । ସୁତରାଂ ଏ ଦେଶର ଇତିହାସରେ ଭ୍ରମ ପ୍ରମାଦ ବହୁଳ ଲକ୍ଷିତ ହୁଏ । ସୁତରାଂ ଗୋଟିଏ କଥା ଯେଉଁ ନାନାମୁନିଙ୍କର ନାନାମତ ପ୍ରଚରିତ ହେଉଅଛି ।

ଅମ୍ଭେମାନେ ବର୍ତ୍ତମାନ ଏଠାରେ ଯେଉଁ ବିଷୟର ଅବତାରଣା କରୁଅଛୁଁ, ସେଥିରେ ମଧ୍ୟ ମତଭେଦ ଅଛି । ଜଣେ ଦୁଇଜଣ ବୈଦେଶିକ ଐତିହାସିକଙ୍କର ମତ ଅନୁସରଣ କରି ଅମ୍ଭେମାନେ ପ୍ରମାଣ ନ ଲୋଡ଼ି ଅଖିବୁଜି ସ୍ୱଦେଶର ଅନେକ ପ୍ରକୃତ କଥାକୁ ଅନ୍ୟପ୍ରକାର କହି ଆସୁଅଛୁଁ । କୋହିଲେକ ଆଜି ଶାରଳାଦାସଙ୍କୁ କେହି ତିନଶତ ବର୍ଷ ପୂର୍ବବର୍ତ୍ତୀ, କେହି ମହାଭାରତର ଅନୁବାଦକ କେହିବା ରାଜା ବୀରକିଶୋରଦେବଙ୍କ ଅନୁଗ୍ରହପ୍ରାପ୍ତ ବୋଲି କହି ତାଙ୍କୁ ଇତସ୍ତତଃ କରନ୍ତେ ! ଓଡ଼ିଶାର

ପ୍ରସିଦ୍ଧ ଇତିହାସ ଲେଖକ ହଣ୍ଟର ସାହେବ ଉପେନ୍ଦ୍ରଭଞ୍ଜ ଏବଂ ଶାରଳାଦାସଙ୍କୁ ଏକକାଳୀନ ବୋଲି ନିର୍ଦ୍ଦେଶ କରି ଅଛନ୍ତି ।* ଶାରଳାଦାସ ଭଞ୍ଜଙ୍କ ସମକାଳୀନ ନୁହନ୍ତି, କିଂବା ମହାଭାରତର ଅନୁବାଦକ ନୁହନ୍ତି । ଲେଖକଙ୍କର ଉଭୟ କଥା ଭ୍ରାନ୍ତିସଙ୍କୁଳ, ଏହାଛଡ଼ା ଅନ୍ୟାନ୍ୟ କବିଙ୍କ ସମ୍ବନ୍ଧରେ ସେ ଯାହା ପ୍ରକାଶ କରିଅଛନ୍ତି ତନ୍ମଧ୍ୟରୁ ଅନେକ ମତଭ୍ରାନ୍ତ, ଏଥିଲାଗି ଆମ୍ଭେମାନେ ତାଙ୍କଠାରେ ପୂର୍ଣ୍ଣ ଦୋଷାରୋପ କରୁନାହୁଁ । କାରଣ ସେ ବୈଦେଶିକ ହବାରୁ ଅତି ଏଦେଶର ଭାଷା ଉତ୍ତମରୂପେ ଅଭ୍ୟସ୍ତ କରି ନଥିବାରୁ ଉକ୍ତବିଷୟରେ ଯଥେଷ୍ଟ ପ୍ରମାଣ ସଂପୂର୍ଣ୍ଣ ସଂଗ୍ରହ କରିବାକୁ ସମର୍ଥ ହୋଇନାହାନ୍ତି । ସୁତରାଂ ସେ ଏଦେଶୀୟ ଲୋକଙ୍କ ଠାରୁ ଯାହା ଯେପରି ଶୁଣିଲେ ତାହା ସେହିପରି ଲେଖି-ଗଲେ । କିନ୍ତୁ ଏସମସ୍ତ ଭ୍ରମର ସଂଶୋଧନ ଅସ୍ମାଦୃଶ ଆଳସ୍ୟ-ପରିପୂର୍ଣ୍ଣ ଏବଂ ଅନୁସନ୍ଧିତ୍ସାବିମୁଖ ଜାତିର ବହୁକାଳ ସାପେକ୍ଷ ।

ଶାରଳା ଦାସଙ୍କର ଆବିର୍ଭାବ କାଳ ।

ଏଥିପୂର୍ବେ ଆମ୍ଭେମାନେ ଉଲ୍ଲେଖ କରିଅଛୁଁ ଯେ, କିଂବଦନ୍ତୀ ତାମ୍ରଫଳକ ମୃତବ୍ୟକ୍ତିର ସମାଧି ପ୍ରାଚୀନ ଗ୍ରନ୍ଥ ପୁରାତନ ଦେବାଳୟାଦି ଇତିହାସ ସଂଗ୍ରହର ଉପକରଣ । ଆମ୍ଭେ-ମାନେ ଏହିଠାରେ ସେହିପରି କେତୋଟି ଉପକରଣ ଘେନି ପ୍ରମାଣ କରିବୁଁ ଯେ ଶାରଳାଦାସ ତିନି ଶତ ବର୍ଷରୁ ଅନେକ

---

* Sarala Das Kavi—Lived 300 years ago and translated the Mahabharat into Oriya.

Upendrabhanja—A Raja of the Gumusar, and the most eminent of all the Oriya poets; lived 300 years ago. History of Orissa Vol. II Pages 208—9

ପୂର୍ବର କବି । ଉପେନ୍ଦ୍ରଭଞ୍ଜଙ୍କ କଥା ଛେଣିକି ଥାଉ ଭକ୍ତକବି ଜଗନ୍ନାଥ ଦାସ ତାହାଙ୍କର ପରବର୍ତ୍ତୀ । ଅନ୍ୟର ମଧ୍ୟ ତାହାଙ୍କ ଲେଖାରେ ଶୁଣସି; ହୋସି, ଦେସି, ଚଳୁ ପ୍ରଭୃତି କ୍ରିୟାର ବହୁଳ ବ୍ୟବହାର ଦେଖିଲେ ମନେ ହୁଏ ତାହା ପ୍ରାକୃତରୁ ଉତ୍ପନ୍ନ ଓଡ଼ିଆର ଶୈଶବକାଳ । ଓଡ଼ିଆ ଭାଷା, ସୃଷ୍ଟିର ପ୍ରଥମ ଓ ତତ୍ପୂର୍ବବର୍ତ୍ତୀ ଶତାବ୍ଦୀରେ ଅବଶ୍ୟ ପ୍ରାକୃତ ବହୁଳ ଥିଲା ବୋଲି ଅନୁମାନ ହୁଏ । ଏହି ମହାଭାରତର ଭାଷା ତହିଁର ସାକ୍ଷ୍ୟ ଦାନ କରୁଅଛି । ତେବେ ତାହା ଏଦେଶବାସୀମାନଙ୍କର ସଂସ୍କୃତପ୍ରିୟତା ଏବଂ ପ୍ରାକୃତଦ୍ୱେଷିତା ପ୍ରଭାବରୁ କ୍ରମଶଃ ରୂପାନ୍ତରିତ ହୋଇ ସଂସ୍କୃତର ଅଭିମୁଖୀନ ହେଉଁ ଆଧୁନିକ ଆକାର ଧାରଣ କଲା । ତଥାପି ଉଲ୍ଲିଖିତ ଶିଶୁତ୍ୱ ବା ଅପକ୍ୱତା ତିରୋହିତ ହେବାକୁ ପ୍ରାୟ ଅର୍ଦ୍ଧଶତାବ୍ଦୀରୁ ଊଣା ଲାଗି ନଥିବ । ଶାରଳାଦାସଙ୍କ ମହାଭାରତ ପାଠ କଲେ ସ୍ପଷ୍ଟ ଜଣାଯାଏ ସେଥିର ଭାଷା ଅତି ପ୍ରାଚୀନ । ତହିଁର ଅନେକ ଶବ୍ଦ ପୂର୍ବତନ ପାଲି ବା ପ୍ରାକୃତରୁ ସଦ୍ୟଜାତ ପରି ବୋଧ ହୁଏ । ଉତ୍କଳର ପ୍ରାଚୀନ ସାହିତ୍ୟରେ ଯେ ପ୍ରକାର ପ୍ରୟୋଗ ଅତି ବିରଳ । ଗୋଟିଏ ଦୃଷ୍ଟାନ୍ତ ଏହି, ସଂସ୍କୃତର ଜଗତ୍ ଓ ନାଥ ଶବ୍ଦ ଅପଭ୍ରଷ୍ଟ ହୋଇ ପାଲି ଓ ପ୍ରାକୃତରେ ଯଥାକ୍ରମେ ଜଗୁ † ଓ ନାହ ହୋଇଅଛି । ଆମ୍ଭମାନଙ୍କ ପ୍ରାଚୀନ ସାହିତ୍ୟରେ ଜଗୁ ‡ ଏବଂ ବର୍ତ୍ତମାନ ସାହିତ୍ୟରେ ସୁଦ୍ଧା ନାହାର ସ୍ୱତନ୍ତ୍ର ବ୍ୟବହାର ଅଛି; ମାତ୍ର ଏକାଠି ଜଗନ୍ନାଥ ପରିବର୍ତ୍ତରେ 'ଜଗୁନାହା'ର ବହୁଳ ବ୍ୟବହାର ଶାରଳା ମହାଭାରତ ଭିନ୍ନ ଅନ୍ୟତ୍ର ଦୃଷ୍ଟ ହୁଏ ନାହିଁ । ସେହିପରି ଏଥିରେ ନଖ ସ୍ଥଳରେ 'ନହ'

† ଲଳିତ ବିସ୍ତର ଦେଖ ।

‡ ଜଗଜ୍ଜୀବନ ଦାଶରଥି, ଜାନକୀଦେବୀ ପ୍ରାଣପତି-'କମଳଲୋଚନ ।

ଅଭିଜ୍ଞ ସ୍ଥଳରେ 'ଅହିଜ୍ଞ' ଇତ୍ୟାଦି ପ୍ରକାର ପ୍ରୟୋଗର ପ୍ରାଚୁର୍ଯ୍ୟ ମଧ୍ୟ ଭାଷାର ପ୍ରାଚୀନତାଜ୍ଞାପକ । ଉଦାହରଣସ୍ୱରୂପ ବନ ପର୍ବରେ "ଦଶ ନହି ମୁହିଁ ଭରୁ କରେ ପଣରଣାମି ପୃ ୧୯୦ "ଅହିଜ୍ଞେ ଯାତ୍ନେଣ ସେହି ରାଜାର କୁମାରୀ"-ପୃ ୩୨୯ ଉଦ୍ୟୋଗ ପର୍ବରେ 'ଝଟ ଅନରୂପ ବକାଶିଲେ ଜଗନ୍ନାଥ' ପୃ ୭୨ । ସେହିପରି 'ପ୍ରତଦ୍ଧନ କରଇ ସେ ଭରହ (ଭୈରବ) ତାଣ୍ଡବ' ସଃ ପଃ ପୃ ୧୮ 'କଣଯ୍ୟ (କନକ) ମୟୂରଥରେ ଉଜ୍ଜ୍ୱଳ ପାତାଙ୍କ, ବିଃ ପଃ ପୃ ୬୮ । 'ଗମନ୍ତି ସେ ରନ୍ଥ (ରଥ) ବରେ ପୁଷ୍ପକ ସଦୃଶେ' ଭୀଃ ପଃ ଇତ୍ୟାଦି । ଏତଦ୍ବ୍ୟତୀତ ନିମ୍ନଲିଖିତ ପ୍ରକାର ପ୍ରୟୋଗମାନ ଏହି ମହାଭାରତରେ ପରିବ୍ୟାପ୍ତ । ସେ ପ୍ରକାର ଶବ୍ଦର ବ୍ୟବହାର ଜଗନ୍ନାଥ ଦାସୀୟ ଅଥବା ତତ୍ପର-ବର୍ତ୍ତୀ ସାହିତ୍ୟରେ ଆମ୍ଭେମାନେ ପ୍ରାୟ ଦେଖି ପାରୁ ନାହିଁ । ଯଥା;—(୨) ଘାନ୍ତି (ଘାତ ଶବ୍ଦଜ) ବାର ବା ଅର ଅଧୁନାକ 'ଘାଇ' ଶବ୍ଦଟି ବୋଧହୁଏ ଏହା ପରେ ସୃଷ୍ଟ) ପଶ୍ଚାନ୍ତ (ପଶ୍ଚାତ୍) ତତ୍କ୍ଷଣାନ୍ତ (ତତ୍କ୍ଷଣାତ୍) ଇତ୍ୟାଦି । (୩) ଛମୁରେଣ, ଯାତ୍ନେଣ, ତୋହରେଣ, ସଙ୍ଗତେଣ, ଧାମନ୍ତ୍ରେଣ, ଝୁମ୍ପନ୍ତ୍ରେଣ ଇତ୍ୟାଦି । (୪) ସବୁନ୍ତି (ସର୍ବଙ୍କି) ଅମ୍ଭନ୍ତି (ଅମ୍ଭଠିଁ)

---

(୨) ଏଘାନ୍ତି ପୂର୍ବଗୋଟି ଜାଣ ନ କରନ୍ତି—ଅ, ପ, ପୃ ୧୫
ଘାନ୍ତି ଏ ପେଷିରୁ ନନ୍ଦ ଘୋଷକୁ ଗଲେ—କ, ପ ପୃ ୮

(୩) ଏମନ୍ତ୍ରେଣ କଥା ରୂ ହୋ ଶୁଣ ନୃପମଣି—ଅ, ପ,
ଯାତ୍ନେଣ ଯେ ଦେଖି ନ ପାରିବ ଆଉ ମୂଳ—ପୃ ୩୮
ତୋହରେଣ ଚକ୍ରି ଆପେ ହୋଇଲୁ ଯେ ଅମ୍ଭେ—
ଦାନେଣ ନକଲି ସେ ମାନେଣ ଚକ୍ରବର୍ତ୍ତୀ ।
ଜ୍ଞାନେଣ ପଣ୍ଡିତ ସେ ଅଟଇ ମହାମତି—ପୃ ୧୭
ବ୍ୟାସ ନିଜେ କଲେ ଅସି ବାରୁଣାବନ୍ତେଣ—ପୃ ୩୯
ଘାଏଣ ଅସାଷ୍ଟମେ ପଡ଼ିଲେ ଦେବରଏ—ମଧ୍ୟ ପର୍ବ

(୪) ତୋହର ନାମନ୍ତ୍ରେ ଅଟେ ବଇଲ ସବୁନ୍ତି—ଅ, ପ, ପୃ ୭

ଏହ୍ୱେନେଙ୍କ (ଏମନ୍ତ) ତୋହର ଥାନ୍ତେ (ତୁ ଥାଉଁ), ଅମ୍ଭର ଥିଲେ (ଅମ୍ଭେ ଥିଲେ) ଇତ୍ୟାଦି । (୫) ଅଛୁସି, ଶୁଣସି କରସି, ନଏସି ଇତ୍ୟାଦି । (୬) ପୁଅନ୍ତ (ପୁଅଙ୍କୁ) ଅମ୍ଭ-ମାନନ୍ତ ଦେବନ୍ତ, ବଶିଷ୍ଠନ୍ତ, ଦେବତାନ୍ତ ଇତ୍ୟାଦି ସ୍ଥଳରେ ଦ୍ୱିତୀୟା ବିଭକ୍ତିର ଆକାର 'ନ୍ତ' ଥିବାର ଅମ୍ଭେମାନେ କେବଳ ଏହି ଶାରଳା ମହାଭାରତରୁ ବହୁ ପରିମାଣରେ ଦେଖୁଅଛୁଁ । ବିଶେଷତଃ ତୋତେ, ମୋତେ ସ୍ଥଳରେ ତୁକୁ, ମୁକୁ ଏବଂ ତୋହରେଣ, ମୋହରେଣ ଏପ୍ରକାର ପ୍ରୟୋଗ ତତ୍ପରବର୍ତ୍ତୀ କୌଣସି ପ୍ରାଚୀନସାହିତ୍ୟ ପୁସ୍ତକରେ ପ୍ରାୟ ନାହିଁ ବୋଲି ଅମ୍ଭମାନଙ୍କର ବିଶ୍ୱାସ । (୭) ଏସମସ୍ତଙ୍କୁ ଛାଡ଼ି ଆଉ କେତେଗୁଡ଼ିଏ ପ୍ରୟୋଗ ଦେଖା ଯାଏ । ଯାହା ଅମ୍ଭମାନଙ୍କୁ ଅତି ପ୍ରାଚୀନ ପ୍ରୟୋଗ ପରି ବୋଧହୁଏ । ଅତଏବ ଅମ୍ଭେ-ମାନେ କେବଳ ଏହି ଭାଷାରୁ ଅଟେ ସିଦ୍ଧାନ୍ତ କରି ପାରୁଁ ଯେ ଶାରଳା ଦାସ ଭକ୍ତ କବି ଜଗନ୍ନାଥଙ୍କର ପୂର୍ବବର୍ତ୍ତୀ ।

---

ତୁମ୍ଭର ଥାନ୍ତେ କୃଷ୍ଣଲକ୍ଷ୍ମ ଏତେଦଶା—ସ, ପ,

ପାଣ୍ଡୁରାଜା ଶୁଣିଲେ ତାହାଙ୍କର କହନ୍ତେ—ଆ, ପ, ପୃ ୫୩

(୫) ତୁହି ଅମ୍ଭର ପ୍ରିୟ ଅଛୁସି ହୋ ରାଜା—ସ, ପ, ପୃ ୨୪୭

ଶୁଣସି ମହାପାତ ହୋଇ ପରମ ଶାନ୍ତି—ଆ, ପ, ପୃ ୬

ସହସ୍ର ଅସ୍ୱମେଧ ନ କୋଟି କଲ୍ୟାଣ ହୋଇ—ଆ, ପ,

ମୋହର ରକ୍ଷଣ ପାଇଁ ପଠାଏ ନଅସି—ଆ, ପ, ପୃ ୮୧

(୬) ଉଭୟ କୂଳର ଉନ୍ତ ଗୋବିନ୍ଦ ଉଚ୍ଚାରି—ଆ, ପ, ୯

ପୁଅନ୍ତ ଛାଡ଼ି ତନ୍ତୁ ଚଳିଲେ ଦେବ ବ୍ରୁନ୍ତୀ !—ଆ, ପ,

ମେଦନ୍ତ ପ୍ରୋକ୍ଷଣ କରି ଦକ୍ଷିଣେ ବସିଲେ—ନ, ପ,

ଏହାନ୍ତ ଘେନ ଯେବେ ମୁଁ ଯିବ ପଳାଇ—ମ, ପ,

ତେହିର ଷଡ଼ିପଣ ନ ଯୋଗାଇ ଅମ୍ଭନ୍ତ—ଆ, ପ,

ସଦାଶିବ ବଳରାମ ଘୋଷିଣ ଦୁହିନ୍ତ—ସ, ପ, ପୃ ୫୫୦

(୭) ନକୁଳ ବୋଇଲେ ଯୋଡ଼ା ବାରୁଅଛି ହେନ—ବ, ପ,

ପର ହରନ୍ତି ପାତାଳେ ଝଲକେ ବେନାନ—ସ, ପ, ପୃ, ୨୭୩

ଦ୍ୱିତୀୟ କଥା ତଦୀୟ ଗ୍ରନ୍ଥର ଅନେକ ସ୍ଥାନରେ ଓଡ଼ରାଷ୍ଟ୍ର ବା ଓଡ଼ିଶା ଓ ତଦନ୍ତର୍ଗତ କେତେକ ପ୍ରାଧାନ ସ୍ଥାନର ନାମୋଲ୍ଲେଖ କରିଅଛନ୍ତି ଏବଂ ତତ୍ସହ ଚୂଡ଼ଙ୍ଗ ବା ଅନଙ୍ଗ । (୮) କେବଳ ଏହି ଦୁଇ ପ୍ରାଚୀନ ନରପତିଙ୍କ ନାମ ସୂଚନା କରିଅଛନ୍ତି । ଏଥିରୁ ସ୍ପଷ୍ଟ ଜଣା ଯାଉଅଛି ଯେ, କବି ଅନଙ୍ଗଭୀମ ଦେବଙ୍କ ରାଜତ୍ୱକାଳର ବହୁବର୍ଷ ଉତ୍ତାରେ ଜନ୍ମ ଲାଭ କରିଥିଲେ । ଇତିହାସ ଅଜ୍ଞାତ ଥିବାରୁ ବୋଧ ହୁଏ କବି ଉକ୍ତ ଦୁଇ ରାଜାଙ୍କୁ ବହୁ ପ୍ରାଚୀନ ବୋଲି ଅନୁମାନ କରି ମହାଭାରତୀୟ-ଯୁଗରେ ସେମାନଙ୍କ ନାମ ସନ୍ନିବେଶିତ କରିଅଛନ୍ତି ।

---

ହୁକରେ ଥାନ୍ତି ଶୁକ୍ଳ ଅମାବାଇ ରାତ—ସ, ପ, ପୃ ୧୧୩
ପୂର୍ଣ୍ଣିହିଁ ଜନ୍ମରୁ ଦୁଃଖାରୁ ଅନ୍ଧ ନେଲଥି—ସ, ପ, ପୃ ୩.୯
ପରେ ନୀରମାନ ଯେ ନାଉଡ଼ନ୍ତ (ତାଳନ୍ତ) ଅଣି—ସ, ପ,
ପାଇଲ ନ ପାଇବାକୁ ସନ୍ଥପ (ସନ୍ଧ୍ୟା) କେ କରୁ—ସ, ପ,
କାଳିନ୍ଦ୍ରିର ଶବଦରେ କରନ୍ତି କୁରୁଳ—ସ, ପ, ପୃ ୧୪୨
ତ୍ରୁପଦ ରାଜା ଅଗେ ଦେଶାଉରେ (ପ୍ରଣିଧି) କହିଲେ—ଅ, ପ,
ହେ ପାତକମାନ ଅଗେ ଲାଗଇ ମୁକୁଇଁ—ଅ, ପ, ପୃ ୩୩
ନୈପ ସହାରଣ ନୁଥିଲେ (ନ ପାଇଲେ) କହୁଁ ୨—ଉ, ପ
ପଞ୍ଚାଳ ଦେଶ ରାଜାଶୁଣିଲା ଦଣ୍ଡଲାଇ—ଅ, ପ, ପୃ ୨୨୯
ଯେତେକ ବସ୍ତ୍ର ମୋର ଚରଣର ତଳ
ତହିଁ ତନ ପାଦ ଦାନ ଦେବୁ ମହୀଥଳ (ମହୀପାଳ)—ଉ, ପ,
ଭୁଇଁ ସନ୍ଦେଶ ଥାନ୍ଦେଲ କେବଣ ନୃପତି—ସ, ପ, ପୃ ୧୩୨
ବିହିନ୍ତି ପୁରୁଷ ତହିଁ କହିଲେ ଯାତାଙ୍କୁ—ଭୀ, ପ, ପୃ ୧୧
ଗାତରେ ଅଛି ଲୋହର ବସ୍ତ୍ର ଯେ ଛଉର (କବଚ)—ବ, ପ,
(୮) ଯେ ଦେଶେ ଅଛି ଚୂଡ଼ଙ୍ଗ ଚକ୍ରବର୍ତ୍ତୀ ରାୟେ ।
ତାର ଭୁବନେ ନକୁଳ-କଲକ ବଜାୟେ—ବ, ପ, ପୃ ୨୨୪
କଳଙ୍ଗ ବଳଙ୍ଗ ଯେ ଓଡ଼ଙ୍ଗ ବଙ୍ଗ ଦେଶ ।
ତାନ୍ତ୍ରୀନ ନିଷ୍ଠୁର ଅଛି ଦେଶ ଯେ ବିଶେଷ
ଅନଙ୍ଗ ଓଡରାଷ୍ଟ୍ର ଯେ ଦେନଶ ଭୋଜରାଷ୍ଟ୍ର—ଅ, ପ,

ଉପରୋକ୍ତ ପ୍ରମାଣମାନଙ୍କ ସାହାଯ୍ୟରେ ବର୍ତ୍ତମାନେ ଆମ୍ଭେମାନେ ଏହା କହିବାକୁ ସମର୍ଥ ହୋଇଅଛୁଁ ଯେ, ଗଜପତି ଅନଙ୍ଗଭୀମ ଦେବଙ୍କ ରାଜତ୍ୱ ଅନ୍ତେ ଏବଂ ରାଜା ପ୍ରତାପରୁଦ୍ରଙ୍କର ରାଜତ୍ୱ ପୂର୍ବେ ଅଥବା ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରୁ ଷୋଡ଼ଶ ଶତାବ୍ଦୀର ଅର୍ଦ୍ଧ ପର୍ଯ୍ୟନ୍ତ ଏହି ଦୁଇ ଶତବର୍ଷ ମଧ୍ୟରେ ଅବଶ୍ୟ ଅମ୍ଭମାନଙ୍କର ଏହି କବି ଆବିର୍ଭୂତ ହୋଇଥିବେ । ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱପୂର୍ବେ କହିବାର ଆଉ ଗୋଟିଏ କାରଣ ଏହି ଯେ, ତାହାଙ୍କର ରାଜତ୍ୱ ମଧ୍ୟରେ ମହାବୈଷ୍ଣବ ଚୈତନ୍ୟ ଦେବଙ୍କ ଦ୍ୱାରା ଉତ୍କଳରେ ବୈଷ୍ଣବ ଧର୍ମ ପ୍ରବର୍ତ୍ତିତ ହେଲା ଏବଂ ତତ୍ସଙ୍ଗେ ବଙ୍ଗୀୟମାନଙ୍କର ଏ ଦେଶରେ ଅବସ୍ଥାନ ଦ୍ୱାରା ବଙ୍ଗ ଭାଷାର ପ୍ରଭାବ ଏ ଭାଷାକୁ ସ୍ପର୍ଶ କରିଥିଲା, ସେଥି ଯୋଗୁଁ ଜଗନ୍ନାଥ ପୁରୁଷୋତ୍ତମ ପ୍ରଭୃତି ତତ୍କାଳୀନ କବିଙ୍କ ଲେଖାରେ କେତୋଟି ବଙ୍ଗାତ୍ମକ ଶବ୍ଦ ଏଥିରେ ପ୍ରବେଶ କରିଥିବାର ଲକ୍ଷିତ ହୁଏ । କିନ୍ତୁ ଏହି ବିରାଟ ଗ୍ରନ୍ଥରେ ସେ ପ୍ରକାର ଶବ୍ଦର ସତ୍ତା ନାହିଁ । * ଉକ୍ତ

* ବଙ୍ଗଳା ଶବ୍ଦ ଜାଣିବା ଦୂରେ ଥାଉ ବଙ୍ଗଳା ଅକ୍ଷର ଓ ଭାଷା ତାହାଙ୍କର କର୍ଣ୍ଣଗୋଚର ହୋଇଥିଲା କି ନାହିଁ ସେଥିରେ ସନ୍ଦେହ ଜନ୍ମେ । ମଧ୍ୟପର୍ବ ଲିଖିତ ଏହି କତିପୟ ପଂକ୍ତି ପଢ଼ିଲେ ଅମ୍ଭମାନଙ୍କୁ ଏହିପରି ସଂଶୟରେ ପଡ଼ିବାକୁ ହୁଏ । ଶ୍ରୀକୃଷ୍ଣଙ୍କ ଲିପି ଶିକ୍ଷା ସ୍ଥଳରେ କବି "ଓଡ୍ରଅ ତେଲଙ୍ଗୀ ଅନ୍ଧ ନାଗରୀ ଦକ୍ଷିଣୀ, କର୍ଣ୍ଣାଟକ ଦ୍ରାବିଡ଼ ଯେ ଆଉ ଭାଷା ହେଁ । ଏହିପରି ଶିକ୍ଷିଲେ ଭାଷା ଚଉଷଠି, ନବଦିନେ ଲେଖିଲେ ତାଳପତ୍ର ଚଟି ।' ଲେଖିଲେ, କିନ୍ତୁ ତନ୍ମଧ୍ୟରେ ପ୍ରତିବାସୀ ବଙ୍ଗର ନାମୋଲ୍ଲେଖ ସୁଦ୍ଧା ନାହିଁ । ଏଠାରେ ବୋଧହୁଏ କବି 'ଲିପି' ଅର୍ଥରେ ଭାଷା ଶବ୍ଦ ବ୍ୟବହାର କରି ଅଛନ୍ତି । ଅତିପ୍ରାଚୀନକାଳରେ ୬୪ ପ୍ରକାର ଲିପି ପ୍ରଚଳିତ ଥିବାର ପ୍ରମାଣ ମିଳେ । 'ଲଳିତ ବିସ୍ତର' ନାମକ ପ୍ରସିଦ୍ଧ ବୌଦ୍ଧଗ୍ରନ୍ଥରେ ଅନେକ ଅଦର୍ଶ ଲିପିର ନାମ ଏବଂ ବୁଦ୍ଧଦେବ ଏକା ଶୀ ୬୪ ପ୍ରକାର ଲିପି ଅଭ୍ୟାସ କରିଥିବାର କଥା ଲିଖିତ ହୋଇଅଛି । କିନ୍ତୁ ସେଥିରେ ବଙ୍ଗଲିପିର ନାମ ସର୍ବାଗ୍ରେ କହିତ

ପଦ୍ୟାଂଶମାନ ଅଂଶତଃ ତାହାର ପ୍ରମାଣ । ସୁତରାଂ ଏହା ପ୍ରାଚୀନ ସାହିତ୍ୟର ଅଧମ ଅବସ୍ଥାର ସୂଚନା କରୁଅଛି । ଏହି-ପରି ନାନା ପ୍ରମାଣ ଦ୍ୱାରା ଅମ୍ଭେମାନେ ସେହି ଆବିର୍ଭାବକାଳ ପ୍ରତି ଅଗ୍ରସର ହୋଇ ପାରୁଅଛୁଁ । ଆଉ ଜଗନ୍ନାଥଙ୍କର ପରବର୍ତ୍ତୀ ଅଧିକାଂଶ ସାହିତ୍ୟ ଯେପରି ବୈଷ୍ଣବୀୟ କଥା ବା ରାଧାକୃଷ୍ଣପ୍ରେମାମୃତରସରେ ପରିପୁଷ୍ଟ ଏବଂ ସେଥିରେ ପ୍ରେମମୟ ରାଧାକୃଷ୍ଣଙ୍କର ଯେପରି ରସାଶ୍ରିତ ବର୍ଣ୍ଣନା ଅଛି, ଏଗ୍ରନ୍ଥରେ ଉକ୍ତ ଯୁଗଳମୂର୍ତ୍ତିର ସେପରି ବର୍ଣ୍ଣନା ନାହିଁ କିମ୍ବା ସେ ପ୍ରକାର ଗୁଣ ପ୍ରକାଶକ ବିଶେଷଣ ନାହିଁ । ଦ୍ୱିତୀୟ କଥା କବିଙ୍କର ଚତୁର୍ଦ୍ଦଶାକ୍ଷର ଛନ୍ଦକୁ ଓଡ଼ିଆ ଛନ୍ଦର ପ୍ରଥମ ଅବତାର କହିଲେ ଚଳେ । ଏହା ପରବର୍ତ୍ତିସାହିତ୍ୟର ଛନ୍ଦ ପରି କୌଣସି ନିୟମବଦ୍ଧ ନୁହେ । ଅନେକ ସ୍ଥଳରେ ଯେପରି ଅକ୍ଷର ସଂଖ୍ୟାର ବ୍ୟତିକ୍ରମ ହୋଇଅଛି ଅଧିକାଂଶ ସ୍ଥାନରେ ସେହିପରି ଯତିପାତର ନିୟମଭଙ୍ଗ ମଧ୍ୟ ହୋଇଅଛି । ତେଣୁ ପାଠ କଲାବେଳେ ତାହା ଯଥାର୍ଥ ଛନ୍ଦ ବା ପଦ୍ୟ ପରି ଶୁଣା ନ ଯାଇ ଗଦ୍ୟ ପ୍ରାୟ ଶୁଣା ଯାଏ ।

ଯାହା ପ୍ରମାଣ କରିବ ପାଇଁ ଅମ୍ଭେମାନେ ଏତେ ଅନ୍ଦୋଳନ କରି ଆସିଲୁଁ, ସେ ସମ୍ବନ୍ଧରେ କବିମଧ୍ୟ ଅମ୍ଭମାନଙ୍କୁ କିଞ୍ଚିତ୍ ଆଭାସ ଦେଇଅଛନ୍ତି । ମହାଭାରତ ପ୍ରାରମ୍ଭରେ ସେ ତାହାଙ୍କର ଯେଉଁ କ୍ଷୀଣ ପରିଚୟ ଦେଇ ଅଛନ୍ତି, ସେଥିରୁ ବୁଝି ଯାଉଅଛି ଯେ ଗଙ୍ଗାବଂଶୀୟ ରାଜା

ହୋଇଅଛି ବଙ୍ଗଭାଷା ଅପେକ୍ଷାକୃତ ପରବର୍ତ୍ତିନୀ ହେଲେହେଁ ବଙ୍ଗାକ୍ଷର ଯେ ବହୁକାଳ ପୂର୍ବରେ ଥିଲା, ତାହା ଅମ୍ଭେମାନେ ଉକ୍ତ ବୌଦ୍ଧଗ୍ରନ୍ଥରୁ ଏବଂ ଐତିହାସିକମାନଙ୍କ ଉକ୍ତିରୁ ଜାଣିଅଛୁଁ ମାତ୍ର ଏହିକବି ସେ ଲିପିର ନାମୋଲ୍ଲେଖ କରି ନାହାନ୍ତି । ଏପରି ଦଗନ୍ଧତା ଏଦେଶରେ ଚୈତନ୍ୟଙ୍କ ଅବସ୍ଥିତିକାଳରେ ଅଥବା ତତ୍ପରେ ସମ୍ଭବେ କି ?

କପିଳେନ୍ଦ୍ରଦେବଙ୍କ ରାଜତ୍ବକାଳରେ (୧) ସେ ବର୍ତ୍ତମାନ ଥିଲେ । ମାତ୍ର "ପ୍ରଣମିତେ ଶଠର କପିଳେଶ୍ୱର ରାଜା" ଏତିକିରୁ ଆମ୍ଭେମାନେ କବିଙ୍କର ସନ ତାରିଖ ଦେବାକୁ ଏକାନ୍ତ ଅକ୍ଷମ । ତଥାପି ଆମ୍ଭମାନଙ୍କର ଅନୁମାନ ସ୍ୱତଃ ସେକାଳପ୍ରତି ପ୍ରଧାବିତ ହୋଇ କେଉଁଠାରେ ସ୍ଥିରତା ଅବଲମ୍ବନ କରିବ ଦେଖାଯାଉ । ଯେଉଁ ଇତିହାସର ସତ୍ୟଉପରେ ଆମ୍ଭେମାନେ ବିଶ୍ୱାସ ସ୍ଥାପନକରି ଆସୁଅଛୁଁ, ସେଥିରୁ ଏହା ମିଳୁଅଛି ଯେ, କପିଳେନ୍ଦ୍ର ବା କପିଳେଶ୍ୱର ଦେବ ଖ୍ରୀଷ୍ଟୀୟ ୧୪୫୨ ଅବ୍ଦରୁ ୧୪୭୯ ଅବ୍ଦ ପର୍ଯ୍ୟନ୍ତ ୨୭ ବର୍ଷ କାଳ ରାଜତ୍ୱ କରିଥିଲେ । ଏହି ରାଜତ୍ୱଯୁଗର କେଉଁଅଂଶରେ କବି ମହାଭାରତ ଆରମ୍ଭ କରିଥିଲେ, ତାହା ଜାଣିବା କଠିନ, ତଥାପି ଉଲ୍ଲିଖିତ ଉକ୍ତିର ଭଙ୍ଗୀରୁ ପ୍ରତୀତ ହେଉଅଛି ଯେ ଗ୍ରନ୍ଥ ଲେଖିଲା ବେଳକୁ ରାଜତ୍ୱର ପ୍ରାୟ ଅର୍ଦ୍ଧାଂଶ ଅତୀତ ହୋଇଥିଲା ।

ଏହି ଅନୁମାନ ଉପରେ ନିର୍ଭର କରି ଆମ୍ଭେମାନେ ଯଦି ମହାଭାରତ ରଚନା କାଳକୁ ୧୪୬୫ ଖ୍ରିଷ୍ଟାବ୍ଦର ଅସନ୍ନକାଳ ଧରୁଁ, ତାହା ହେଲେ ଜନ୍ମକାଳ ଅବଧାରଣ କରିବା ପାଇଁ କେବଳ ତତ୍କାଳୀନ ବୟସ ନିରୂପଣ କରିପାରିଲେ ଯଥେଷ୍ଟ ହେବ । ଏହି ମହାଗ୍ରନ୍ଥ ମଧ୍ୟରେ କବି କୌଣସିଠାରେ ଯଦ୍ୟପି ସ୍ୱୀୟ ବୟସର ଉଲ୍ଲେଖ କରି ନାହାନ୍ତି, ତଥାପି ସେଥିରୁ ତାହାଙ୍କ ଅବସ୍ଥାର ପରିଚୟ ମିଳେ । 'ଶାରଳା ଦାସକୁ ପ୍ରଭୁ

(୧) ଯନେଶ୍ୱର ଲିଙ୍ଗରାଜ ମହୋଦଧି ତଟେ
ନୀଳସୁନ୍ଦର ପର୍ବତ ଶ୍ରୀକଳପବଟେ ।
ବଳଦେବ ରାମକୃଷ୍ଣ ସୁଭଦ୍ରା ମହାବ୍ରହ୍ମ
ବୃଷଲକ୍ଷ ବଢଶସହୀଦ ମହାତମ ।
କଳିକାଳ ଧ୍ୱଂସନକୁ ଭୋଗକୋଟି ପୂଜା
ପ୍ରଣମିତେ ଶଠର କପିଳେଶ୍ୱର ରାଜା । ଆଃ ପଃ ପୂ ୨

ଜେନ୍ମୁକ୍ତି ଦେବା' ଇତ୍ୟାଦ ପ୍ରକାର ଉକ୍ତି ଗ୍ରନ୍ଥର ସ୍ଥାନେ ସ୍ଥାନେ କବଙ୍କ ମୁଖରୁ ଯେପର ଘନଘନ ନଃସୃତ ହୋଇ ଅଛୁ, ସେଥିରୁ ଏବଂ ତହିଁରୁ ଯେଉଁ ବ୍ୟାକୁଳଭାବ ମୋକ୍ଷଲପ୍ସା ଅମ୍ଳାନ ପ୍ରବୃତ୍ତର ପରଚୟ ମିଳୁଅଛୁ ତଦ୍ୱାର୍ ଅନୁମାନ ହୁଏ, ତେତେବେଳେ ତାହାଙ୍କୁ ଜର୍ ବା ବାର୍ଦ୍ଧକ୍ୟ ଆକ୍ରମଣ କରଥିଲା । ଅବଶ୍ୟ ପାଞ୍ଚଶତ ବର୍ଷ ପୂର୍ବର ଜନ-ସାଧାରଣଙ୍କର ଆୟୁ ବା ଜୀବନକାଳକୁ ବଗ୍ଟର କର ଦେଖିଲେ ଏହା ବୋଲାଯାଇ ପାରେ ତେତେବେଳେ ତାହାଙ୍କର ବୟସ ପଞ୍ଚାଶ ବର୍ଷରୁ ଊର୍ଦ୍ଧ୍ୱ ହୋଇଥିବ । ତତ୍କାଳୀନ ବୟସ ତେତକ ବର୍ଷ ଧରଲେ କବଙ୍କର ଜନ୍ମବତ୍ସର ୧୪୧୫ ଖ୍ରିଷ୍ଟାବ୍ଦର ନକଟବର୍ତ୍ତୀ ହେଉଅଛୁ । ଅତଏବ ଅନ୍ୟ ପ୍ରମାଣ ପାଇବାଯାଏ ବର୍ତ୍ତମାନେ ଅମ୍ଭେମାନେ ଏହ ସିଦ୍ଧାନ୍ତରେ ଉପନୀତ ହୋଇ ପାରୁଁ ଯେ କବ ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ଆବର୍ଭୂତ ହୋଇଥିଲେ । ଏହ ସିଦ୍ଧାନ୍ତ ଅନୁ-ସାରେ କବ ଭକ୍ତ ଜଗନ୍ନାଥଙ୍କର ଏକ ଶତାବ୍ଦୀ ପୂର୍ବବର୍ତ୍ତୀ ଅଥବା ବର୍ତ୍ତମାନ ବର୍ଷ ପ୍ରତ ପ୍ରାୟ ପାଞ୍ଚଶତବର୍ଷ ପୂର୍ବବର୍ତ୍ତୀ ଅଟନ୍ତ । ପାଞ୍ଚଶବର୍ଷ କହଲେ କଛୁ ଅଧିକ ହେଉ ନାହିଁ । ଅଦ୍ୟାପି ପ୍ରଚଳିତ ସ୍ଥାନୀୟ ଜନଶ୍ରୁତ ଏହ ସିଦ୍ଧାନ୍ତର ପୋଷକତା କରୁଅଛୁ । କବଙ୍କର ବର୍ତ୍ତମାନ ବଂଶଧରମାନେ କହନ୍ତ ଯେ, ବଂଶପରମ୍ପରାଗତ ଶ୍ରୁତ ଅନୁସାରେ ଶାରଳା ଦାସ ସେମାନଙ୍କର ପଞ୍ଚଦଶ ବା ଷୋଡ଼ଶ ପୁରୁଷ ହେବେ । ଷୋଳ ପୁରୁଷରେ ୫୦୦ ବର୍ଷ ଅତୀତ ହେବା କଦାପି ଅସମ୍ଭବ ନୁହେ ।

ପୂର୍ବ ପ୍ରସଙ୍ଗରେ ଅମ୍ଭେମାନେ ଶାରଳା ଦାସଙ୍କୁ ୫୦୦ ବର୍ଷରୁ ଅଧିକ ପୂର୍ବର କବ ବୋଲି ସ୍ଥିର କଲୁଁ । କନ୍ତୁ ତାହାଙ୍କ

ପୂର୍ବେ କେହି କବି ବିଦ୍ୟମାନ ଥିଲେ କି ନାହିଁ, ତାହା ଏପର୍ଯ୍ୟନ୍ତ ଅଲୋଚନା କରି ନାହୁଁ । ଶ୍ରୀଯୁକ୍ତ ହଣ୍ଟର୍ ସାହେବ କେଶବ କୋଇଲି ୭୦୦ ବର୍ଷ ପୂର୍ବରେ ରଚିତ ହୋଇଥିବାର ପ୍ରକାଶ କରିଅଛନ୍ତି । କେଉଁ ପ୍ରମାଣ ବା ଯୁକ୍ତିର ବଳରେ ସେ କୋଇଲିକୁ ଏତେ ପ୍ରାଚୀନ ବୋଲି ନିରୂପଣ କଲେ, ତାହା ଅମ୍ଭେମାନେ ଦେଖି ପାରୁଁ ନାହୁଁ ।

**ଉତ୍କଳର ଅଦି କବି ।**

ଅମ୍ଭେମାନେ ଦେଖୁଅଛୁଁ କୋଇଲିର ଭାଷା ଅଉ ଅଧୁନିକ ଭାଷା ଏକାପରି ; ସେଥିରେ ପ୍ରାଚୀନତାର କିଛିମାତ୍ର ଲକ୍ଷଣ ନାହିଁ । ତେବେ ଅନେକେ ଏହା କହି ପାରନ୍ତି ଯେ ଅଭିଯୁଦ୍ରାକାର ଲେଖାରୁ ପ୍ରାଚୀନତାର ଲକ୍ଷଣ ବା କିଣ ଜଣାଯିବ ? ପକ୍ଷାନ୍ତରେ, ଯାହା ଥିଲା ତାହା ଦୀର୍ଘକାଳ ସାଧାରଣଙ୍କ ମୁଖରେ ଅବୃତ୍ତି ଦ୍ୱାରା ପରିବର୍ତ୍ତିତ ଏବଂ ମାର୍ଜିତ ହୋଇ ବର୍ତ୍ତମାନ ଅକାର ଧାରଣ କରିଅଛି । ତଥାପି ଅମ୍ଭେମାନେ କୋଇଲିକି ଶାରଳା-ମହାଭାରତଠାରୁ ପ୍ରାଚୀନ ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନୋହୁଁ । କୋଇଲିର ଚତୁର୍ଦ୍ଦଶାକ୍ଷର ବୃତ୍ତ ବର୍ତ୍ତମାନ ଯୁଗର ପଦ୍ୟପରି ଯତିପାତ ନିୟମରେ ରଚିତ । ତାହା ଜଣେ ଅଲ୍ପଜ୍ଞ କ୍ଷୁଦ୍ର କବିଙ୍କ ଦ୍ୱାରା ରଚିତ ପଦ୍ୟ ; ମାତ୍ର ରଚନାର ଲଳିତସ୍ୱର ବୃତ୍ତ ବା ଦଶାରୁ ସ୍ପଷ୍ଟ ଜଣା ଯାଉଅଛି ଯେ, କବି ତତ୍ପୂର୍ବରୁ ଅନେକ ବୃତ୍ତର ପଦ୍ୟାଦି ଅଥବା ଉକ୍ତ ବୃତ୍ତର ଅନେକ ପଦ୍ୟ ପାଠ କରିଥିଲେ । ସେ ସବୁ ତୁଳନା କରି ଦେଖି ନ ଥିଲେ ସର୍ବ ପ୍ରଥମ ରଚନାରେ ଏପ୍ରକାର ପାରିପାଟ୍ୟ ସମ୍ଭବ ହୁଅନ୍ତା ନାହିଁ ! ଏହି ସବୁ କାରଣରୁ ଅମ୍ଭେମାନେ କୋଇଲିକୁ ମହାଭାରତର ପଶ୍ଚାତ୍ ରଚିତ ବୋଲି ବିଶ୍ୱାସ କରୁଅଛୁଁ ; କିନ୍ତୁ ତଥାପି ଏହା ସ୍ୱୀକାର୍ଯ୍ୟ ଯେ, ଚୌଦ୍ଦଶା

କେଶା ଅମ୍ଭମାନଙ୍କ ପ୍ରାଚୀନ ସାହିତ୍ୟର ସର୍ବ ନିମ୍ନସୋପାନ । ନକେ ମହାଭାରତର ଏହି କବି ମଧ୍ୟ ବାଲ୍ୟକାଳରେ କୌଣସି ଚୌତିଶା ଅଭ୍ୟାସ କରିଥିବାର ପ୍ରମାଣ କିମ୍ବଦନ୍ତୀରୁ ମିଳୁ-ଅଛି । ଅଗେ ବର୍ଣ୍ଣମାଳାକ୍ରମେ ଚୌତିଶା ରଚନା ଏବଂ ତାହାର ବହୁକାଳଉତ୍ତାରେ ଚୌତିଶା ଲକ୍ଷଣାକ୍ରାନ୍ତ କୋଇଲି ରଚିତ ହୋଇଥିବା ସମ୍ଭବ ଓ ସଙ୍ଗତ । ଅବଶ୍ୟ କେଉଁ ଚୌତିଶା ବା କୋଇଲି ସର୍ବାଗ୍ରେ ରଚିତ ହୋଇଥିଲା ତାହା ଏ ସ୍ଥଳରେ ନିର୍ଦ୍ଧାରଣ କରିବାକୁ ଅମ୍ଭେମାନେ ଅକ୍ଷମ । ଅନ୍ଧୁରି ମଧ୍ୟ ସର୍ବ ପ୍ରଥମ ରଚିତ ଚୌତିଶା ଏପର୍ଯ୍ୟନ୍ତ ଅଛି କି ନାହିଁ ସନ୍ଦେହର ବିଷୟ । ସେ ଯାହା ହେଉ ଉକ୍ତ-ବିଧ ଚୌତିଶା ବା କ୍ଷୁଦ୍ର ଗୀତ ଏହି କବିଙ୍କ ମହାଭାରତ ରଚନାର ଶୀଳ । ତାହା ଛଡ଼ା କବିତା ରଚନାରେ ସେ ଅନ୍ୟକୌଣସି କବିଙ୍କଠାରୁ ସାହାଯ୍ୟ ପାଇ ନାହାନ୍ତି ବୋଲି ମନେ ହୁଏ । ସୁତରାଂ ଏହି ମହାଭାରତ ଉତ୍କଳର ଅଦମ ସାହିତ୍ୟ । ତହିଁରେ ପ୍ରାକୃତ କଥାସ୍ଥଳର ବର୍ଣ୍ଣନା, ଅକି-ବିଳାପ, ସତ୍ୟର ଅପଲାପ, ଅତିରଞ୍ଜନ, ଅବ୍ୟାକରଣ ପ୍ରୟୋଗ, ନିରଙ୍କୁଶତା, ଅଶ୍ଳୀଳତା ବା ଗ୍ରାମ୍ୟଭାବାଦିର ଯଥେଷ୍ଟ ପରିଚୟ ପାଇ ଅମ୍ଭେମାନେ ଦୃଢ଼ଭାବରେ କହି ପାରୁଁ ଯେ, ତାହା ଅଦମ ସାହିତ୍ୟ ଲକ୍ଷଣାକ୍ରାନ୍ତ । ଏହି ଅଦମ ଯୁଗର ଲକ୍ଷଣ ତତ୍ପୂର୍ବବର୍ତ୍ତୀ ପ୍ରାଚୀନ ସାହିତ୍ୟରେ ଏତେ ନାହିଁ । ମହାଭାରତ ପୂର୍ବରେ ଯେଉଁ ସବୁ କ୍ଷୁଦ୍ରଗୀତାଦି ଥିବାର ଅମ୍ଭେମାନେ ଅନୁମାନ କରୁଁ, ତାହା ଅବଶ୍ୟ ସାହିତ୍ୟ ପଦବାଚ୍ୟ ନୁହେଁ । ଅତଏବ ଶାରଳା ଦାସ ଓଡ଼ିଆଭାଷାର ଅଦିକବି* ବା ଉତ୍କଳର ବାଲ୍ମୀକି ଅଶ୍ୟା

* ଜନମିଲେ ତୋ କୋଳରେ, ଶାରଳାଦି କବିବରେ—ମଧୁସୂଦନ ।

ପାଇବାର ସମ୍ପୂର୍ଣ୍ଣ ଯୋଗ୍ୟ । ଉଭୟ ଆଦିକବିଙ୍କର ଗୁଣଗ୍ରାମ ଓ କ୍ରିୟାକର୍ମରେ ସୌସାଦୃଶ୍ୟ ଅଛି । ବାଲ୍ମୀକିଙ୍କ ଜୀବନର ପ୍ରଥମଭାଗ ଯେପରି ଦସ୍ୟୁଜନୋଚିତ ଘୃଣିତ ବୃତ୍ତିରେ ଯାପିତ ଏହାଙ୍କର ବାଲ୍ୟ ଯୌବନ ମଧ୍ୟ ସେହିପରି କ୍ଷୁଦ୍ରୋଚିତ ହୀନ ବୃତ୍ତିରେ ଅତିବାହିତ । ଦେବାଦେଶରେ ସେ ଆଦି ମହାକବି ଯେପରି ନବଜୀବନ ପ୍ରାପ୍ତ ହୋଇ କଠୋର ତପସ୍ୟା ଦ୍ୱାରା ଜ୍ଞାନରତ୍ନ ଲାଭ ପୂର୍ବକ ପଶ୍ଚାଦବସ୍ଥାରେ ନୂତନ ଛନ୍ଦରେ ମହାକାବ୍ୟ ଆରମ୍ଭ କରିଥିଲେ ; ଉତ୍କଳଭାଷାର ଏହି ଆଦିକବି ମଧ୍ୟ ସେହିପରି ଦେବୀ ଆଦେଶରେ ନିଜବୃତ୍ତି ତ୍ୟାଗକରି କଠିନ ସାଧନା ଓ ଉପାସନା ଦ୍ୱାରା ଅବଶିଷ୍ଟ ଜୀବନ ଯାପନ କରି ଜ୍ଞାନ ଲାଭ କରିଥିଲେ ଏବଂ ସେହି ବଳରେ ସେ ଅପକ୍ୱ ଉତ୍କଳଭାଷାରେ ନୂତନ ଛନ୍ଦରେ ମହାଭାରତ ମହାପ୍ରାସାଦ ନିର୍ମାଣ କରିଥିଲେ । ବଲ୍ମୀକୋଦ୍ଭବ ମହର୍ଷି ଯେପରି ବାଲ୍ମୀକି ନାମରେ ସମଗ୍ର ଭାରତବାସୀଙ୍କ ନିକଟରେ ପରିଚିତ, ଶାରଳାଦେବୀଙ୍କର ବରଦାସ ଏହି ଶୂଦ୍ରମୁନି ମଧ୍ୟ ସେହିପରି ଶାରଳା ଦାସ ନାମରେ ସମଗ୍ର ଉତ୍କଳଖଣ୍ଡରେ ପରିଚିତ । ତାହାଙ୍କୁ ଉତ୍କଳର ବାଲ୍ମୀକି ବୋଲି କହିବା ଦ୍ୱାରା ଏହା କେହି ବୁଝିବେ ନାହିଁ ଯେ, ତାହାଙ୍କ ପୂର୍ବରେ ଉତ୍କଳରେ ଆଉ କବି ଆଖ୍ୟାଧାରୀ କେହି ନ ଥିଲେ । ତାହାଙ୍କର ବହୁକାଳ ପୂର୍ବରେ ଅନେକ ଉତ୍କଳୀୟ କବି ସଂସ୍କୃତଭାଷାରେ କାବ୍ୟ-ନାଟକାଦି ରଚନା କରିଥିଲେ ଏବଂ କେହି କେହି ମଧ୍ୟ ପାଲି ଓ ପ୍ରାକୃତରେ ଗ୍ରନ୍ଥ ଲେଖିଥିଲେ ବୋଲି ଅମ୍ଭମାନଙ୍କର ବିଶ୍ୱାସ । କିନ୍ତୁ ଦେଶଭାଷାର କବିଗଣଙ୍କ ମଧ୍ୟରେ ତାଙ୍କ ବ୍ୟତୀତ ଆଉ କେହି ପ୍ରାଚୀନ ନୁହନ୍ତି । ଦେଶଭାଷାସ୍ଥଳରେ

ଅବଶ୍ୟ ଦେଶର ନାମ ପ୍ରଯୁକ୍ତ୍ୟ । ସୁତରାଂ ଏହି ମହାଗ୍ରନ୍ଥର ରଚୟିତାଙ୍କୁ ଉତ୍କଳ-ବାଲ୍ମୀକି ଆଖ୍ୟା ପ୍ରଦାନ କଲେ ଉତ୍କଳଭାଷା ଓ ଦେଶର ଗୌରବ ଅପଚିତ ହେବ ନାହିଁ ।

ବାଲ୍ୟଶିକ୍ଷା ଏବଂ ବିଦ୍ୟାର ଚର୍ଚ୍ଚା ।

ବର୍ତ୍ତମାନ ପ୍ରାୟ ପୂର୍ବେ ଏ ଦେଶରେ ବିଦ୍ୟାଳୟ ନ ଥିଲା କିମ୍ବା ଏକତ୍ର ବହୁ ଛାତ୍ରଙ୍କୁ ଯଥାବିଧି ଶିକ୍ଷାଦାନର ବ୍ୟବସ୍ଥା ନ ଥିଲା । ଯାହା କିଛି ଥିଲା ତାହା କେବଳ ସଂସ୍କୃତ ଭାଷାରେ ହେଉଥିଲା । ଗଙ୍ଗବଂଶୀୟ ନରପତିମାନଙ୍କର ରାଜତ୍ବ ଯୁଗର ପୂର୍ବେ ଏବଂ ପ୍ରାରମ୍ଭରେ ଏ ଦେଶରେ ସନନ୍ଦ ସଂସ୍କୃତ ଭାଷାରେ କ୍ୱଚିତ୍ ପାଲି ଭାଷାରେ ଲିଖିତ ହେଉଥିଲା । ଦେଶବାସୀମାନେ ସଂସ୍କୃତ ଶିକ୍ଷାରେ ସବିଶେଷ ଅନୁରାଗୀ ଥିଲେ ଏବଂ ସାଧାରଣତଃ ସଂସ୍କୃତ ଅଭିଧାନ ଅଗ୍ରେ ପଢ଼ି ବ୍ୟାକରଣ ଓ ତତ୍ପଶ୍ଚାତ୍ କୌଣସି କାବ୍ୟ ଆଲୋଚନା କରୁଥିଲେ । ରାଜପୁରୋହିତମାନେ ଏବଂ ରାଜଧାନୀର ସଦ୍‌ବଂଶଜ ବ୍ରାହ୍ମଣମାନେ ରାଜାଙ୍କର ଅନୁକମ୍ପାରୁ ସଂସ୍କୃତ କାବ୍ୟ ନାଟକାଦି ବର୍ଣ୍ଣନାରେ ସମଧିକ ପାଣ୍ଡିତ୍ୟ ଉପାର୍ଜନ କରୁଥିଲେ । ଉତ୍କଳ ଦେଶୀୟ କାବ୍ୟ ନାଟକାଦିରୁ ସେମାନଙ୍କର ଅସାଧାରଣ ପାଣ୍ଡିତ୍ୟର ପରିଚୟ ମିଳୁଅଛି । ରାଜସଭାରେ ପାଣ୍ଡିତ୍ୟ ପ୍ରଦର୍ଶନ ନିମିତ୍ତ ଜନପଦରୁ ମଧ୍ୟ ଅନେକେ ସଂସ୍କୃତ ଲେଖାପଢ଼ାରେ ଧୁରନ୍ଧର ହେବାକୁ ଅନବରତ ଚେଷ୍ଟା ଏବଂ ପରିଶ୍ରମ କରୁଥିଲେ । ଏହିପରି ସମୟରେ ଜନସାଧାରଣଙ୍କ ମୁଖରେ ମାଗଧୀ ପ୍ରାକୃତ ଏବଂ ତତ୍କାଳୀନ ଦେଶ ପ୍ରଚଳିତ ଶବ୍ଦମାନ ମିଶି ଓଡ଼ିଆ ଭାଷାର ସୃଷ୍ଟି ହେଲା ଏବଂ କ୍ରମେ ତାହା ଅଶିକ୍ଷିତ ସାଧାରଣଙ୍କ ଦ୍ୱାରା ପୁଷ୍ଟିଲାଭ କରି ଅନୟମିତ ଓ ଅସଂଯତ ଭାବରେ ଚଳିବାକୁ ଲାଗିଲା । ଲୋକସାଧାରଣ

କେବଳ ଘରେ ଏବଂ ବାହାରେ ପ୍ରାକୃତଜନଙ୍କ ସହିତ ପ୍ରାକୃତ ଭାଷାର ବ୍ୟବହାର କରିବାକୁ ବାଧ୍ୟ ହେଉଥିଲେ; କିନ୍ତୁ ନିଜର ଭାବରାଶି ପ୍ରକାଶ ସ୍ଥଳରେ ସେ ଭାଷାକୁ ଉପେକ୍ଷା କରି ସଂସ୍କୃତ ଭାଷାରେ ସେହି ମହାଭାବମାନ ରଖିବା ଦ୍ୱାରା ସଂସ୍କୃତ ସାହିତ୍ୟର ପୁଷ୍ଟିସାଧନ କରିବାକୁ ଲାଗିଲେ। ସୁତରାଂ ଉପଯୁକ୍ତ ପୋଷକ ଅଭାବରୁ ଉତ୍କଳଭାଷା ପ୍ରଥମେ ବହୁକାଳ ଅପୌଗଣ୍ଡ ଅବସ୍ଥାରେ ପଡ଼ିରହିଲା। ସମ୍ଭବତଃ ଏହିପରି ଅବସ୍ଥାର ପ୍ରାୟ ୨୦୦ ବର୍ଷ ଉତ୍ତାରେ ଶାରଳାଦାସ କବି ଅବତୀର୍ଣ୍ଣ ହୋଇ ମହାଭାରତ ରଚନାର ସୂତ୍ରପାତ କଲେ। ସେତେବେଳେ ଓଡ଼ିଆ ଭାଷା ରଚନାରେ ସାହାଯ୍ୟ ପାଇଁ କୌଣସି ପୁସ୍ତକ ନ ଥିଲା କିମ୍ବା ମାତୃଭାଷା ଶିକ୍ଷା ଲାଗି କୌଣସି ପାଠଶାଳା ମଧ୍ୟ ନ ଥିଲା। ଆହୁରି ମଧ୍ୟ ଆଦ୍ୟମଯୁଗର ଲୋକେ ଆଜିକାଲି ପରି ବିଦ୍ୟାଳୟରୁ ଶିକ୍ଷା କରୁ ନ ଥିଲେ। କେହି ଗୁରୁ ମୁଖରୁ ଶୁଣି କେହି ବା ମହାଶିକ୍ଷାଳୟ ପ୍ରକୃତିର ଅନୁଶୀଳନ କରି ଏବଂ କେହି୨ ସାଧନା ଧ୍ୟାନ ଧାରଣା ଦ୍ୱାରା ବହିର୍ଜଗତରୁ ଜ୍ଞାନ ଲାଭ କରି ଜ୍ଞାନୀ ହେଉଥିଲେ। ଅସ୍ମମାନଙ୍କର ଅଧିକାଂଶ ସମ୍ଭବତଃ ଏହି ପ୍ରକାରେ ଶିକ୍ଷିତ। ସେ ବାଲ୍ୟକାଳରେ କେବେ ବର୍ଣ୍ଣଶିକ୍ଷା ଆରମ୍ଭ କରିଥିଲେ ଏବଂ କେତେଦୂର ଶିକ୍ଷାଲାଭ କରିଥିଲେ ତାହା ଜାଣିବାର ଉପାୟ ନାହିଁ। ସେତେବେଳେ ଅନୁମାନ ଦ୍ୱାରା ଆମ୍ଭେମାନେ ଏତିକି କହିବାକୁ ଅଗ୍ରସର ହୋଇଅଛୁଁ—ସେ ଶିକ୍ଷା ଦ୍ୱାରା ଓଡ଼ିଆ ଲେଖି ପଢ଼ି ପାରିବାର କ୍ଷମତା ପ୍ରାପ୍ତ ହୋଇଥିଲେ। ଖଣ୍ଡେ ଦୁଇଖଣ୍ଡ ଚୌତିଶା ବା କ୍ଷୁଦ୍ରଗୀତ ତାଦାମ୍ୟ କବିତ୍ୱର ସମ୍ବଳ ଥିଲା। ବାଲ୍ୟକାଳରୁ ସେ କାର୍ଯ୍ୟ କରୁଥିଲା ବେଳେ ମନେ ମନେ ଇଚ୍ଛାମତ ଗୀତ ରଚନା କରୁଥିଲେ। ଏହି

ପ୍ରକାରେ ସ୍ତ୍ରୀୟ ବ୍ୟବସାୟ କୃଷିରେ ତାହାଙ୍କ ଜୀବନର ସାର-ଭାଗ ଅତୀତ ହୋଇଗଲା ଏବଂ ଏହି ଅତିକ୍ରାନ୍ତ ବୟସରେ ତଦୀୟ ଜୀବନର ମାର୍ଗ ଅତି ଅଦ୍ଭୁତ ଭାବରେ ପରିବର୍ତ୍ତିତ ହୋଇଗଲା । ତହୁଁ ସେ ପୂର୍ବବ୍ୟବସାୟ ଏବଂ ନୀଚ ସଂସର୍ଗ ଛାଡ଼ି ସତ୍‌ସଂସର୍ଗରେ ମହାଭାରତ ରଚନା ଦ୍ୱାରା ଅନ୍ତ୍ୟଜୀବନର ମାର୍ଗ ଉଜ୍ଜ୍ୱଳତର କରିବାକୁ ପ୍ରବୃତ୍ତ ହେଲେ । ଏହି ପରିବର୍ତ୍ତନ ସମ୍ବନ୍ଧରେ ଏକାଧିକ ସ୍ଥାନୀୟ କିଂବଦନ୍ତୀ ପ୍ରଚଳିତ ଅଛି । ତନ୍ମଧ୍ୟରେ ଯେଉଁଟି ନବ ପ୍ରକାଶିତ ମହାଭାରତର ଉପକ୍ରମଣିକାରେ ସଂକଳିତ ହୋଇଅଛି ସେହିଟି ଅଗ୍ରେ ଏଠାରେ ଉଦ୍ଧୃତ କରାଗଲା ।

“ଝଙ୍କଡ ପ୍ରଗନାସ୍ଥ ମହାମାୟା ଶାରଳାଦେବୀଙ୍କ ପୀଠ ନିକଟରେ କୌଣସି ଏକ ଶୂଦ୍ରର ବସତି ଥିଲା । ତାହାର ଅନେକ ଗୁଡ଼ିଏ ସନ୍ତାନ ଥିଲେ ପିତା ପୁତ୍ର-ମାନଙ୍କ ସମ୍ମୁଖରେ ମହାଭାରତ ବିଷୟ ଗଳ୍ପ କରନ୍ତି । ସମୟରେ ପୁତ୍ରମାନଙ୍କୁ ବର୍ଣ୍ଣିତ ବିଷୟ ମନେଅଛି କି ନାହିଁ ପଚାରନ୍ତେ ସମସ୍ତେ କିଛି କିଛି କହନ୍ତି; କିନ୍ତୁ ସିଦ୍ଧେଶ୍ୱର ନାମଧେୟ କନିଷ୍ଠ ପୁତ୍ର କିଛି କହିପାରନ୍ତି ନାହିଁ । ତେଣୁ ପିତା ତାହାଙ୍କୁ ନାନା କଟୂ ଭର୍ତ୍ସନା କରନ୍ତି । ଏହି ହେତୁରୁ ସିଦ୍ଧେଶ୍ୱର କ୍ଷୁବ୍ଧ ହୋଇ ଜଗଦମ୍ବା ଶାରଳା ଦେବୀଙ୍କ ନିକଟରେ ଧରଣା ପଡ଼ିଲେ । କିଛି ଦିନ ପରେ ଦେବୀ ପ୍ରସନ୍ନା ହୋଇ ବର ଯାଚନ୍ତେ ସିଦ୍ଧେଶ୍ୱର ପ୍ରାର୍ଥନା କଲେ ଯେ ‘ମୁଁ ମହାଭାରତ ରଚନା କରି ପାରିବି’ ଏହି ବର ପ୍ରଦାନ କର । ତାଙ୍କ-ଠାରେ ଦେବୀ ସନ୍ତୁଷ୍ଟ ହୋଇ ଆଜ୍ଞା ଦେଲେ ଯେ, ତୁ ଖେଦା ଲେଖନ ନେଇ କଳ୍ପବଟ ମୂଳରେ ବସ, ଯାହା ଉପରୁ ଶୁଣିବୁ ଲେଖ । ସିଦ୍ଧେଶ୍ୱର ତଦନୁ-ସାରେ କଳ୍ପବଟ* ମୂଳରେ ବସିଲେ ଏବଂ ଯାହା ଶୁଣୁଥାଏ ତାହା ଲେଖୁଥାନ୍ତି । ଏହା ମହାଭାରତ ଅଟେ । ସିଦ୍ଧେଶ୍ୱର ଆପଣାକୁ ଶାରଳା ଦେବୀଙ୍କର ଦାସ (ପରିକର) ନାମ ଧାରଣ କଲେ । ତେଣୁକରି ତାଙ୍କର ନାମ ଶାରଳା ଦାସ ବୋଲି ଲୋକରେ ପ୍ରଚାରିତ ହେଲା ।”

(ପୁରାଣ ପ୍ରକାଶିକା କୋମ୍ପାନି, ୧୮୯୮)

---

* ଏହି ବଟ ବର୍ତ୍ତମାନ ଶାରଳାଦେବୀଙ୍କ ମନ୍ଦିରର ପଶ୍ଚିମଦିଗରେ ଅନତି ଦୂରରେ ଅବସ୍ଥିତ ଏବଂ ଅଦ୍ୟାପି ଶାରଳାବଟ ବୋଲି ଆଖ୍ୟାତ ହେଉଅଛି ।

ଅନ୍ୟତି ସ୍ଥାନୀୟ ଲୋକମାନଙ୍କ ମୁଖରେ ଏହିପରି ପ୍ରଚଳିତ ଅଛି ଯେ, "ଶାରଳା ଦାସ ପୂର୍ବପରି ଦିନେ ଗୋଟିଏ ବିଲଞ୍ଚରେ ହଳ କରୁଥିଲେ । ହଳକର୍ମରେ ଶ୍ରାନ୍ତ ବୋଧ ହେଲାବେଳେ ନିଜର ଏବଂ ଗୋରୁ ଦୁଇଟିର ଉତ୍ସାହ ନିମିତ୍ତ ପ୍ରିୟତମ ଚଉତିଶା ଗୀତ ଉଚ୍ଚସ୍ୱରରେ ଗାଇବାକୁ ଲାଗିଲେ । ସେ ଦିନ ଅତ୍ୟଧିକ ଶ୍ରାନ୍ତ ବଶତଃ ଗୀତ ବୋଲୁ ବୋଲୁ ମଧ୍ୟେ୨ ପଦେ୨ ମନେ ପଡ଼ିଲା ନାହିଁ, ତେତେବେଳେ ସେ ଅଗତ୍ୟା ଗୀତ ରସରୁ ବଞ୍ଚିତ ହୋଇ ଇଷ୍ଟଦେବଙ୍କଠାରେ ଧ୍ୟାନ ରଖିଲେ । କଥିତ ଅଛି ଏହି ଗୀତ ବନ୍ଦ କରନ୍ତେ ହଠାତ୍ ଏକ ନାରୀମୂର୍ତ୍ତି ସେଠାରେ ଆବିର୍ଭୂତ ହୋଇ ତାହାଙ୍କୁ ସମ୍ବୋଧନ କରି କହିଲେ— 'ଗୀତ ବନ୍ଦ କଲୁ କାହିଁକି ? ବୋଲ-ବୋଲ, ଥିସି ଯିବ ଯେ ତୋ ଗୀତ ମୋତେ ବଡ଼ ଭଲ ଲାଗେ । ମୋର ଇଚ୍ଛା ପଛକୁ ତୁଇ ଯେପରି ମହାଭାରତ ରଚନା କରିବୁ ।' (୧) ଏହା କହି ସେ ମୂର୍ତ୍ତି ଅନ୍ତର୍ହିତ ହେଲେ । ଦାସେ ବିସ୍ମିତ ହୋଇ ପୁନର୍ବାର ଗୀତ ଆରମ୍ଭ କରି ସଫଳ କାମ ହେଲେ । ଏହି ଚଉତିଶାର ବର୍ତ୍ତମାନେ ଅସ୍ତିତ୍ୱ ନାହିଁ । ତେବେ ତାହାର ନାମ 'ମନାଇ ଚଉତିଶା' ବୋଲି ତଦୀୟ ବଂଶ-ଧରଙ୍କ ମଧ୍ୟରୁ କେହି୨ କହନ୍ତି । କିନ୍ତୁ 'ମନାଇ' ଶବ୍ଦର ଅର୍ଥ କିଛି ବୁଝା ଯାଉ ନାହିଁ, ବୋଧ ହୁଏ ତାହା 'କହ୍ନାଇ ଚଉତିଶା' ହେବ । କାରଣ କବି ନିଜେ ଗୀତରେ କୃଷ୍ଣ-ଚରିତ ରଚନା କରି ନିତ୍ୟ ଅଭ୍ୟାସ କରୁଥିବାର ମହା-ଭାରତର ଏକଅଂଶରେ ପ୍ରକାଶ କରିଅଛନ୍ତି (୨) । ଅଦ୍ଭୁତ

---

(୧) ପ୍ରସନ୍ନେ ଆଜ୍ଞା ମତେ ଦେଲେ ଯେ ଶାରଳାମ୍ବ, ଲଭ ତୁ ଯଶ ମହାଭାରତ ରଚନ କର ।

(୨) ଅଭ୍ୟାସର କୃଷ୍ଣର ଅଧ୍ୟାୟ । ସଦା ନୋହେ ହୃଦୟରେ ପ୍ରବୃ କର ଦେଲ—ପୃଃ୨ ସଭାନିକ ପର୍ବ ।

ମଧ୍ୟ ପ୍ରାଚୀନ ଚରିତଶାକାରମାନେ ପ୍ରାୟ ମଙ୍ଗଳାଚରଣ ସ୍ୱରୂପ ପ୍ରଥମେ କ ଅକ୍ଷରରେ କୃଷ୍ଣଙ୍କର ନାମ ସ୍ମରଣ କରି ତାଙ୍କ ଚରିତ ପ୍ରକାଶ କରୁଥିଲେ ଯଥା,—କମଳ ଲୋଚନ ଶ୍ରୀହରି, କରେଣ ଶଙ୍ଖ ଚକ୍ରଧାରୀ । କଃ କୋଃ 'କଳା କାଳନ୍ଦୀତଟରେ' 'କଳା କଳେବର କହ୍ନାଇ' କୃଷ୍ଣ କଥା ଚନ୍ଦ୍ର ଗୋପୀ ସକଳ'—ଗୋପୀଭାଷା, 'କୋଇଲଲୋ କେଶବ ଯେ ମଥୁରାକୁ ଗଲା' କେ, କୋଃ ।

କିମ୍ବଦନ୍ତୀ ଜନଶ୍ରୁତି ଏହି ଯେ, "ଶାରଳା ଦାସ ବାଲ୍ୟରେ ଥରେ ଗୋଟିଏ ପାଣି ମାଠିଆ ମୁଣ୍ଡରେ ରଖି ଅଣ୍ଟାରୁ ପୁଞ୍ଜାଏ ମୁଢ଼ି ଖାଇବାଇ ହଳ କରୁଥିଲେ । ଏଣେ ରାଜ-କନ୍ୟାର ବିବାହ ଲାଗି ଗୁଣବନ୍ତ ବର ଖୋଜା ପଡ଼ୁଥିଲା । ରାଜପକ୍ଷର ଲୋକେ ଏପରି ଅଦ୍ଭୁତକର୍ମା ହାଲକକୁ ଦେଖି ଗୁଣବନ୍ତ ଓ ଚତୁରତାର ପରିଚୟ ପାଇ ହଳଠାରୁ ତାହାକୁ ଆଦର କରି ରାଜଦ୍ୱାରକୁ ଘେନିଗଲେ । ରାଜପରିଚାରକ-ମାନେ ତାହାଙ୍କର ଯଥାବିଧି ସମ୍ବାଦ୍ଧ କରି ଯଥା ସମୟରେ ବିବାହ ମଣ୍ଡପରେ ବସାଇଲେ । ହଳଚାଷୀ କୃଷକ ସେହି ମଣ୍ଡପରେ ବସି ତହିଁର କାଷ୍ଠ ବାଉଁଶ ପ୍ରଭୃତି ଉପକରଣ ନିରୀକ୍ଷଣ କରି କୃଷିକର୍ମୋଚିତ ଉପକରଣର ଉପଯୋଗିତା ଓ ସାଦୃଶ୍ୟ ବିଷୟରେ ନାନା କଳ୍ପନା କରୁଥିଲେ । ଏହି ସମୟରେ ରାଜକନ୍ୟା ଅର୍ଘ୍ୟ ଥାଳୀ ଘେନି ବନ୍ଦାପନା କରିବାକୁ ଗଲେ । ତାଙ୍କୁ ଦେଖି ସରଳ କୃଷକ ସ୍ୱଭାବତଃ ଅତି ଭୀତ ହୋଇ ଖଟତଳକୁ ଲୁଚିଗଲେ । ରାଜକୁମାରୀ ତଦ୍ଦର୍ଶନରେ ସାତିଶୟ ଲଜ୍ଜିତା ହୋଇ ତାହାଙ୍କୁ ମୂର୍ଖ, ଅଧମ ପ୍ରଭୃତି ଶବ୍ଦରେ ବିଶେଷିତ କରି ସେହିଠାରେ ଥାଳୀ ଫିଙ୍ଗିଦେଇ ବିଷଣ୍ଣ ମନରେ ଅନ୍ତଃପୁରକୁ ଚାଲିଗଲେ । ସ୍ତ୍ରୀର ଧିକ୍କାରରେ ସେ

ଆପଣାକୁ ବଡ଼ ଅପମାନିତ ମନେ କରି ସବୁଛାଡ଼ି କେବଳ ଜ୍ଞାନ ଲାଭ କରିବା ପାଇଁ ବ୍ୟାକୁଳ ହୋଇ ଏଣେ ତେଣେ ବୁଲିଲେ ଏବଂ ବରଦା ଶାରଦାଙ୍କ ମନ୍ଦିରରେ ଉପସ୍ଥିତ ହୋଇ ଦେଖିଲେ ଦେବୀ ସେଠାରେ ନାହାନ୍ତି । ତହୁଁ ସେ ଦ୍ୱାର ରୁଦ୍ଧ କରି ତାହାଙ୍କର ଅନୁଧ୍ୟାନ କଲେ । ଅନନ୍ତର ଦେବୀ ଉପସ୍ଥିତ ହୋଇ ଉକ୍ତ ଉପାସନାରେ ଅତୀବ ପ୍ରୀତ ହୋଇ ଏହି ବର ଦେଲେ 'ତୁ ବିଦ୍ୟାରେ ସବୁ ଜିଣିପାରିବୁ ଏକା ବିଦ୍ୟାନଗରୀକୁ ଜିଣି ପାରିବୁ ନାହିଁ । ସରସ୍ୱତୀପ୍ରାପ୍ତି କାଳରେ ଏକା ହଠାତ୍ ଏହି ଶ୍ଳୋକଟି ଦ୍ୱାରା ତାହାଙ୍କୁ ବନ୍ଦନା କରିଥିଲେ—"କଜ୍ଜ୍ୱଳ ପୂରିତ ଲୋଚନ ଧାରେ, ସ୍ତନଯୁଗ ଶୋଭିତ ମୁକ୍ତା (ମୁକୁତା) ହାରେ । ବୀଣା ପୁସ୍ତକ ରଞ୍ଜିତ ହସ୍ତେ, ଭଗବତି ଭାରତି ଦେବି ନମସ୍ତେ" ସର୍ବାଦୌ ରୂପବର୍ଣ୍ଣନାରେ ଦେବୀ କିଞ୍ଚିତ୍ ବିରକ୍ତି ପ୍ରକାଶ କଲେ । ମାତ୍ର ସେହି ଦିନଠାରୁ ସେ ଦେବୀଙ୍କ ମନ୍ଦିରରେ ରହି ଆରାଧନା ଦ୍ୱାରା ଅଧିକାଂଶ ଜୀବନ ଯାପନ କରିବାକୁ ଲାଗିଲେ । ଦେବୀ ସେଥିରେ ଅତୀବ ପ୍ରୀତା ହୋଇ ଏକଦା ଦୈବୀବାଣୀରେ ଆଦେଶ କଲେ । 'ତୁ ମହାଭାରତ ରଚନା କଲେ ମୁଁ ଅତିଶୟ ସନ୍ତୁଷ୍ଟ ହେବି । ସେ କହିଲେ ମୁଁ ମୂର୍ଖ, ମହାଭାରତ କପରି ରଚନା କରିବି ! ତହୁଁ ଦେବୀ ଉତ୍ତର କଲେ ସେଥିପାଇଁ ଚିନ୍ତା କ'ର ନା । ତୁ କାଲି ଗଲାବେଳେ ବାଟରେ ଯେଉଁ ଲେଖନୀଟି ପାଇବୁ ତାହାକୁ ନେଇ କଳ୍ପବଟ ମୂଳରେ ବସିଲେ ତୋତେ ସବୁ ଦୃଶ୍ୟ ହେବ ।" (୩)

ଶେଷୋକ୍ତ କାହାଣୀଟି ମହାକବି କାଳିଦାସଙ୍କ ସମ୍ବନ୍ଧରେ ମଧ୍ୟ ଶୁଣାଯାଏ ଏବଂ ଉକ୍ତ ଶ୍ଳୋକଟି କାଳିଦାସଙ୍କ ପ୍ରଥମ

(୩) ସେ ଦେବୀ ଦେଲେ ମୋତେ ଲେଖନି ସେ ଗୋଟି ।

ରଚିତ ବୋଲି ଲୋକେ କହିଥାନ୍ତି । କିନ୍ତୁ ଶ୍ଲୋକଟି ଯେପରି ଉତ୍କଳର ଗୃହେ ଗୃହେ ପ୍ରଚଳିତ, ଅନ୍ୟ କୌଣସି ଦେଶରେ ସେପରି ନୁହେ । ଏ ଦେଶର ପ୍ରତ୍ୟେକ କ୍ଷୁଦ୍ର କବି ଏବଂ ପାଲାବାଲାମାନେ 'ଉତ୍କଳଭାରତୀ' ଶାରଳା ଦେବୀଙ୍କର ବନ୍ଦନାରେ ଏହି ଶ୍ଲୋକର ଅବୃତ୍ତି ବରାବର କରିଥାନ୍ତି । ଅନ୍ୟର ମଧ୍ୟ ଶ୍ଲୋକର ଦ୍ୱିତୀୟ ପାଦର ଶେଷାଂଶ ଯଦି "ମୁକ୍ତାହାରେ" ଅବିକଳ ଏହିପରି ପ୍ରଥମରୁ ଥାଏ, ତାହାହେଲେ ଏହା ଶାରଳାଦାସଙ୍କ ଦ୍ୱାରା ରଚିତ ହୋଇଥିବା ବିଚିତ୍ର ନୁହେ । ସଂସ୍କୃତର ମହାକବିଙ୍କର ଦୃଷ୍ଟି ଗଭୀରତମ ପ୍ରଦେଶକୁ ନ ଯାଇ ବାହ୍ୟରୂପ ଦର୍ଶନ ଏବଂ ଶ୍ଲୋକପଦାନ୍ତ ସମତାପ୍ରତି ଦୃଷ୍ଟି ପଡ଼ି ନ ଥାନ୍ତା । ଏହି କିଂବଦନ୍ତୀ କଥିତ ପରିବର୍ତ୍ତିତ ଆକାରେ * ଏ ଦେଶରେ ତଥା ଅନ୍ୟତ୍ର କାଳିଦାସଙ୍କ ସମ୍ବନ୍ଧରେ ପ୍ରଚଳିତ ଥିଲେହେଁ ତାହା ରଘୁବଂଶାଦି ମହାକାବ୍ୟ ପ୍ରଣେତା ମହାକବି କାଳିଦାସଙ୍କ ପ୍ରତି ପ୍ରଯୁଜ୍ୟ ନୁହେ ବୋଲି ବର୍ତ୍ତମାନ ପ୍ରତ୍ନତତ୍ତ୍ୱବିଦ୍ ମନୀଷୀମାନେ ସିଦ୍ଧାନ୍ତ କରିଅଛନ୍ତି । ଏହି କିନଶ୍ରୁତିର ଐକ୍ୟ ଯୋଗୁଁ ଅନେକ ଅଧୁନାପି କହିବାକୁ ସାହସ କରୁଅଛନ୍ତି ଯେ କାଳିଦାସ ସେହି ଶାରଳାଦାସ । ସ୍ୱର୍ଗାରୋହଣ ପର୍ବର ପ୍ରାରମ୍ଭବର୍ଣ୍ଣିତ ଏହି କେତୋଟି ପଂକ୍ତି ମଧ୍ୟ ସେମାନଙ୍କ ଏହି ମତର ପୋଷକତା କରୁଅଛି । "ତୁମ୍ଭେ କହିପାର କଥା ମୁହିଁ ନ ଧଡ଼ିଲି, ମନ୍ଦବୁଦ୍ଧି ଅଟେ ମୋର ଜାଣି ମୁଁ ନ ଥିଲି । କଇଳାସ ଦ୍ୱାରପାଳ ନାମ ମୋର ନନ୍ଦୀ । ଶାସ୍ତ୍ରର ଆଗମେ ହର ପାଉଁଶୀଙ୍କୁ ବନ୍ଦି । ଯେଉଁପରି ରଚିବାର ସେ ମୋତେ ବୋଇବେ । ମାତା ପିତାଙ୍କ ସଙ୍ଗମ ବୋଲିଣ କହିଲେ । ତାହା ଶୁଣି

* ଏହା 'ଅସ୍ତି କଶ୍ଚିତ୍ ବାଗ୍ ବିଶେଷଃ' ଅବଲମ୍ବନରେ କଳ୍ପିତ ।

ବଘ୍ନରାଜ ଦେଲେ ମୋତେ ଶାପ । ତହୁଁ ଦୋଷୀ ହୋଇଲି
ମୁଁ ମନୁଷ୍ୟ ସ୍ୱରୂପ । ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ଧ୍ୱଂସ । ତୃତୀୟ ଜନ୍ମରେ ମୁଁ
ଶାରଳାଦାସ କବି, ଅଜ ଜନ୍ମେ ମୁଁ ମର୍ତ୍ତ୍ୟମଣ୍ଡଳେ ଜନ୍ମିବି ।
ଉକ୍ତ କଥା କହି ସାରି ଏ ମର୍ତ୍ତ୍ୟମଣ୍ଡଳ । ତେବେ ଯାଇ ହୋଇବି
ମୁଁ ଶିବ ଦ୍ୱାରପାଳ । ମୋର ଜାତି ନ ଜାଣେ ମୁଁ ଜାଣଇ ଯେ
ଏହା । ସିଦ୍ଧଚଣ୍ଡୀ ଶ୍ରୀଶାରଳା କଲେ ଯାହା ଯାହା" ।
ସ୍ୱଃ ପଃ ୬ପୃ ।

ଏହା କବିଙ୍କର ଉକ୍ତିପରି ଜଣାଯାଉ ନାହିଁ । ମହାଭାରତର ଶେଷ ପର୍ବର ମୂଳ ଅଂଶ ପ୍ରକ୍ଷିପ୍ତ ପରି ବୋଧ ହୁଏ । ଯମ ସ୍ତୁତି ପ୍ରସଙ୍ଗରୁ ହଠାତ୍ ଏ କଥାର ଅବତାରଣା ହୋଇଅଛି । ଏକେ ପୂର୍ବ ପ୍ରସଙ୍ଗ ସହିତ ଏହାର କିଛିହିଁ ସମ୍ପର୍କ ନାହିଁ । ଦ୍ୱିତୀୟରେ ଘଟକେ ବିଚାର କରନ୍ତୁ "ତୁମ୍ଭେ କହିସାର" ଏପରି ପ୍ରୟୋଗ ପ୍ରାଚୀନ କି ନା ! ତୃତୀୟତଃରେ ଗଣେଶଙ୍କ ଶାପ କହିବାର ଉଦ୍ଦେଶ୍ୟ ଏହି ହୋଇପାରେ—ଶାରଳାଦାସ ଚଣ୍ଡୀଙ୍କର ପ୍ରଧାନ ଉପାସକ ଏବଂ ଜଗନ୍ନାଥ ଭକ୍ତ ହେବାରୁ ଶୂଦ୍ରଜାତିର ଉପାସ୍ୟ ଦେବତା ଗଣେଶଙ୍କ ପ୍ରତି ଅଭକ୍ତି ପ୍ରଦର୍ଶିତ ହୋଇଥିଲା । ସୁତରାଂ ବିଘ୍ନେଶ୍ୱରଙ୍କ ଶାପର ଆଶଙ୍କା ହେଉଅଛି । କାଳିଦାସ ନାମରୁ ଜଣାଯାଏ ଯେ କବି କାଳୀଙ୍କର ଦାସ । 'କାଳୀକଳ୍ପତରୁ' ରଚୟିତା ମହାକାଳ ଜଣେ କାଳୀଭକ୍ତ । ତୃତୀୟରେ କବି ଶାରଳା ଚଣ୍ଡୀ ଉପାସକ ଏବଂ ତତ୍ପରବର୍ତ୍ତୀ ନୃସିଂହପୁରାଣରଚୟିତା ପୀତାମ୍ବର ଦାସ ଜଣେ ଶାରଳା ଚଣ୍ଡୀ ଭକ୍ତ । ଅତଏବ ଏହିମାନେ ସମସ୍ତେ ଏକ ଆତ୍ମା ! ଅଉ ଏକ ସନ୍ଦେହର କାରଣ ଏହି ଯେ "ମୋର ଜାତି ନ ଜାଣେ ମୁଁ ଜାଣଇଟି ଏହା" ଏକଥା କବି କାହିଁକି

କହିବାକୁ ଯାନ୍ତେ ? ହୁଏତ ତଦୀୟ ବଂଶଧରମାନେ ନିଜ ଜାତିର ଠେକ ରକ୍ଷିବା ଲାଗି ପୂର୍ବଜାତିର ଅପହ୍ନବ ଉଦ୍ଦେଶ୍ୟରେ ଏପରି ଲେଖିଥିବେ† । ସେ ଯାହା ହେଉ ଶାରଳାଦାସଙ୍କ ସମ୍ବନ୍ଧରେ ଏ ପ୍ରକାର କିଂବଦନ୍ତୀମାନ ସାଧାରଣଙ୍କ ମୁଖରେ ବ୍ଯାପିଯାଇବାର କିଛି ବିଶେଷ କାରଣ ଅଛି । ସେ ଗୁଡ଼ିକ ଅଲୌକିକ ଘଟନାପୂର୍ଣ୍ଣ ହେବାର ଗୋଟିଏ ପ୍ରଧାନ କାରଣ ଏହି ଯେ, ଏତେକ କବି ଗ୍ରନ୍ଥାଦି ଅଧ୍ୟୟନ କରି ନାହାନ୍ତି କିଂବା ସଂସ୍କୃତ କିଛି ଜାଣନ୍ତି ନାହିଁ । ସେପୁଣି ସଂସ୍କୃତ ଭାଷାର ମହାଭାରତପରି ବିରାଟ ଗ୍ରନ୍ଥ କିପରି ରଚନା କଲେ ? ଅଥଚ ସେକାଳରେ କେହି ଦେଶ ଭାଷାରେ କବିତାଦି ରଚନା କରୁ ନ ଥିଲେ । କବିଙ୍କର କବିତ୍ୱରେ ଏହି ଅସାଧାରଣ ଶକ୍ତି-ମତ୍ତାର ପରିଚୟ ପାଇ ସାଧାରଣତଃ ଏହା ମନେକଲେ ଯେ ଅବଶ୍ୟ କୌଣସି ଐଶୀଶକ୍ତିର ଆଦେଶ ନ ହେଲେ ଜଣକ ଦ୍ୱାରା ଏପରି ମହତ୍କର୍ମ ସାଧିତ ହୋଇ ପାରିବ ନାହିଁ । ଦ୍ୱିତୀୟ କଥା କବି ଏତେବଡ଼ ଗ୍ରନ୍ଥ ଲେଖି ସେଥିରେ କେବଳ ନିଜର ନାମ ଓ ଧାମ ଭିନ୍ନ ଆଉ କିଛି ବିଶିଷ୍ଟ ପରିଚୟ ଦେଇ ନାହାନ୍ତି । ସେ ଏହି ଗ୍ରନ୍ଥରେ ସହସ୍ରବାର ଆପଣାକୁ ଶାରଳା ଉପାସକ ଓ ବିଷ୍ଣୁଭକ୍ତ ବୋଲି ପରିଚୟ ଦେଇ ଅଛନ୍ତି ; କିନ୍ତୁ କୁଆପି ଅନ୍ୟାନ୍ୟ କବିଙ୍କପରି ପିତାମାତାଙ୍କନାମ ଜନ୍ମ କାଳ ଜାତି ବ୍ୟବସାୟାଦିର କଥା ଉଲ୍ଲେଖ କରି ନାହାନ୍ତି । ଏହି ଆତ୍ମଗୋପନ ତଦୀୟ ଚରିତକୁ ଅଲୌକିକ ଘଟନା-ବଳୀରେ ପୂର୍ଣ୍ଣ କରିବାର ଦ୍ୱିତୀୟ ହେତୁ ହୋଇଅଛି । ଏହି କିଂବଦନ୍ତୀମାନ ତଦାନୀନ୍ତନ ସମାଜର ରୁଚିଅନୁରୂପ

---

† ଅଦ୍ୟାପି ତଦୀୟ ବଂଶଧରମାନେ ନିଜର ଜାତି ଚଷା ବୋଲି କହନ୍ତି । ସେମାନେ ଆପଣାକୁ ସାଧାରଣ ବୈଶ୍ୟ, କରଣଙ୍କ ପରି ମଣନ୍ତି ନାହିଁ ।

ଅପ୍ରାକୃତ କଳ୍ପନା ଯୋଗରେ ଅତିରଞ୍ଜିତ ଏବଂ ପୃଥୁଳ ହୋଇ ଥିଲେହେଁ ତାହାର ମଜ୍ଜାରେ ଅବଶ୍ୟ ସୂକ୍ଷ୍ମ ସତ୍ୟ ନିହିତ ଅଛି । ପ୍ରତ୍ୟେକ ବିଶିଷ୍ଟ ପୁରୁଷଙ୍କ ସମ୍ବନ୍ଧରେ ସର୍ବକାଳରେ ତାହାଙ୍କ ମାହାତ୍ମ୍ୟଖ୍ୟାପନ ଓ ଅସାଧାରଣତାର ପରିଚୟ ଦେବାଲାଗି ଏହିପରି ଅତିରଞ୍ଜନ ହୋଇଥାଏ । ସେଥିରୁ ସତ୍ୟ ନିଷ୍କାସିତ କରିବା ଆମ୍ଭମାନଙ୍କର କାର୍ଯ୍ୟ । ଯଥାର୍ଥରେ ଚତୁରଲୋକେ ସେମାନଙ୍କ ଜୀବନର କେତେକ ପ୍ରଧାନ ଘଟନାକୁ ଭାବୀ ପୁରୁଷମାନେ କଳ୍ପନା ତୁଳିକାରେ ସୁରଞ୍ଜିତ କରି ସ୍ଥୂଳଦୃଷ୍ଟି ଅଜ୍ଞସାଧାରଣଙ୍କର ଚିତ୍ତରଞ୍ଜକବସ୍ତୁ କରି ଦିଅନ୍ତି । ଅଉ ଅନ୍ଧ ବିଶ୍ୱାସୀ ସାଧାରଣ ଶ୍ରୋତା ବା ପାଠକେ ସେହି ବାହ୍ୟସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପରିତୃପ୍ତି ଲାଭ କରନ୍ତି, ଆଭ୍ୟନ୍ତରୀଣ ରୂପ ଦେଖିବାକୁ ଚେଷ୍ଟା କରନ୍ତି ନାହିଁ କି ସେ ପ୍ରବୃତ୍ତି ତାଙ୍କର ହୁଏ ନାହିଁ । କବିଙ୍କ ଜୀବନ ବୃତ୍ତାନ୍ତ ଅଜିଯାଏ ସେହିପରି ଚିତ୍ତରଞ୍ଜକ ମୋହନ ବେଶରେ ସାଧାରଣଙ୍କ ଦ୍ୱାରା ସଂରକ୍ଷିତ ହୋଇ ଆସୁଥିଲେହେଁ ଏହାର ଆଭ୍ୟନ୍ତରୀଣ ଉପାଦାନ ଜାଣିବା ଅତିସହଜ । କାରଣ ଏଥିରେ ଅତିରଞ୍ଜନମାତ୍ରା ଅପେକ୍ଷାକୃତ ଅଳ୍ପ । ଦେବୀ ନିଜ-ରୂପ ବର୍ଣ୍ଣନାରେ କିଞ୍ଚିତ୍ ଅସନ୍ତୁଷ୍ଟ ହୋଇ କହିଲେ "ତୁ ସବୁ ଜିଣିବୁ ମାତ୍ର କାଶୀକୁ ଜିଣିପାରିବୁ ନାହିଁ"-ଯଥାର୍ଥରେ ବାଣୀବର୍ଣ୍ଣନା କବିଙ୍କର ଦୋଷାବହ । କବି ଏତେ ଗ୍ରନ୍ଥ ରଚନାକରି ପାରିଲେ-ସବୁ-ପଢିଲେ-ବୁଝିଲେ, ମାତ୍ର କାଶୀ ଭାଷା ସଂସ୍କୃତରେ ପ୍ରବେଶ କରି ପାରନ୍ତି ନାହିଁ । ଜନଶ୍ରୁତିରେ ଦେବୀ କହିଲେ 'ତୁ ଯେଉଁ ଲେଖନଟି ପାଇବୁ, ତାକୁ ଯେନି କଳ୍ପବଟ ମୂଳରେ ବସିଲେ ତୋତେ ସବୁ ଦୃଶ୍ୟ ହେବ ।' ଯଥାର୍ଥରେ କବି ପୂର୍ବ ବ୍ୟବସାୟ ଛାଡ଼ି ଭାବପରିବର୍ତ୍ତନ-

ବଶତଃ ଶେଷରେ ଲେଖନୀର ଆଶ୍ରୟ ଗ୍ରହଣ କଲେ ଏବଂ ଚନ୍ଦ୍ରଭାଗାସ୍ଥ କଳ୍ପବଟ ମୂଳରେ ତାହାଙ୍କ ରଚନା କାଳର ଅଧିକାଂଶ ଅତିବାହିତ ହୋଇଥିଲା, ଶାରଳା ଦେବୀ ଯାହା ଡାକୁଥାନ୍ତି-ତାହା ଲେଖୁଥାନ୍ତି ; ଏକଥା କେବଳ ପ୍ରବାଦ ବାକ୍ୟ ନୁହେ, କବି ଗ୍ରନ୍ଥ ମଧ୍ୟରେ ଏକଥା ବାରଂବାର ଉଲ୍ଲେଖ କରି ଅଛନ୍ତି* । ଏପରି ଉକ୍ତି ପ୍ରାଚୀନ କବିଙ୍କ ମୁଖରେ ଶୋଭାପାଏ । କେବଳ ଏହି ଓଡ଼ିଶାରେ ନୁହେ, ଭାରତର ଅନ୍ୟାନ୍ୟଖଣ୍ଡରେ ମଧ୍ୟ ଏହି ଅଭ୍ୟାସ ଦେଖାଯାଏ ମହାରାଷ୍ଟ୍ର ଦେଶର ପ୍ରାଚୀନ କବି ତୁକାରାମ ସ୍ୱବଂଶର ଇଷ୍ଟ-ଦେବତା ବିଠଲଙ୍କ ମନ୍ଦିରରେ ବସି ଯାହା ରଚନା କରୁଥିଲେ ସେ ସମସ୍ତ ବିଠଲପ୍ରସାଦ ବୋଲି ପ୍ରକାଶ କରୁଥିଲେ । ଏହି ପରି କହିବାର କାରଣ ପ୍ରାଚୀନ କବିଗଣ ଦେବାର୍ପିତପ୍ରାଣ, କୌଣସି ପ୍ରକାର ଆତ୍ମବଡ଼ିମା ବା ବିଦ୍ୟାଭିମାନ ତାଙ୍କ ହୃଦୟରେ ସ୍ଥାନ ପାଉ ନଥିଲା । ସେମାନେ 'ଯଦ୍ଜୁହୋଷି ଯଦଶ୍ନାସି ଯଦ୍ଦାସି କରୋଷି ଯତ୍ ଯତ୍ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣଂ' ଗୀତାର ଏହି ନୀତିଅନୁସାରେ ଯାହା କିଛି ଅନୁଷ୍ଠାନ କରୁଥିଲେ, ସେ ସମସ୍ତ ଇଷ୍ଟଦେବାର୍ପିତ କରୁଥିଲେ । ଆମ୍ଭମାନଙ୍କର ଏହି କବି ସେହି ନୀତିର ଜଣେ ପ୍ରଧାନ ଶିଷ୍ୟ । ସେ ଏକ ସ୍ଥାନରେ କହିଅଛନ୍ତି, ଦେବୀ ମୋତେ ରାତିରେ ଯାହା କହିଥାନ୍ତି, ତାହା ମୁଁ ଦିବସରେ

---

* ଦୟାରେ କହିଲ ମୋତେ ଶ୍ରୀଚଣ୍ଡୀ ଶାରଳା । ତେଣୁ କବି ହେବେ ମୋର ପଦ ଯେ ସ୍ଫୁରିଲା । ଉଃ ପ । ସେ ଦେବୀର ପ୍ରସାଦେ ବଳିଲା ମୋର ଚିତ୍ତ । ତା ପ୍ରସାଦେ କହିବଇଁ ଶ୍ରୀ ମହାଭାରତ ; ଆଃ ପ । ବାହୁଳକଳ୍ପରେ 'ମୁଁ ଯେ ପ୍ରତ୍ୟକ୍ଷ ଦେଖଇଁ । ସେ ଯାହା କହନ୍ତି ମୁହିଁ ତାହା ସେ ଲେଖଇଁ ସ୍ୱଃ ପ ।

ଲେଖେ । କବି ନୀରବ ନିଶୀଥରେ ଏକାଗ୍ରଧ୍ୟାନ ଦ୍ୱାରା ଯେଉଁ ବାଣୀପ୍ରସାଦ (ଭାବରାଶି) ଲାଭ କରିଥାନ୍ତି, ତାହା ତତ୍ପରେ ଲେଖନୀ ସାହାଯ୍ୟରେ ଲିପିବଦ୍ଧ କରନ୍ତି, ଏହା ସ୍ୱାଭାବିକ ଏବଂ ସର୍ବଜନସମ୍ମତ । ଯଥାର୍ଥରେ ଦେବୀ ତାଙ୍କ ନିଅନ୍ତ କି ନାହିଁ, ଏ କଥାର ପ୍ରମାଣ ଅନ୍ୟଦ୍ୱାରା ହେବା ତେଣିକି ଥାଉ କବି ନିଜ ମୁଖରେ ପ୍ରମାଣ କରି ଦେଇ ଅଛନ୍ତି । 'ଯାହା ମୋତେ ଦୃଶ୍ୟ ହୁଏ ତାହା ମୁଁ ଲେଖଇଁ । ଅଛି ଅଗୋଚର ଯେ ନିପୁଣ ନ ଅଛି । କହିବା ମହାଭାରତ ଠିକ ଠିକ ଭାବେ । ଶୂଦ୍ରମୁନି ସାରଳା ଦାସ କଥା ପ୍ରସ୍ତାବେ । ଆ, ପ, ପୃ ୩୨୨ । ଏ ମହାଭାରତ ହେଲା ବ୍ୟାସଦେବ ବାକ୍ୟ-ମୁଁ ତାହା ଲେଖିଲି ଯେ ମୋର ଯେତେ ଶକ୍ୟ, ସ୍ୱ, ପ, ପୃ ୩୪ । ଏ ସ୍ଥଳରେ କଣ ଦେବୀ ନ ଥିଲେ ? କବି ସ୍ପଷ୍ଟ କହୁଅଛନ୍ତି ଯେ, ଅଗାଧ ମହାଭାରତରୁ ମୁଁ ମୋହର ଶକ୍ତ୍ୟନୁରୂପ ବାଛି ବାଛି କେତେକ କଥା କହୁଅଛି । ସମସ୍ତ କଥାର ବର୍ଣ୍ଣନା ମୋହର କ୍ଷୁଦ୍ର ଶକ୍ତିର ଅତୀତ । ତଥାପି ଅଧିକାଂଶ ସ୍ଥାନରେ ଦେବୀଙ୍କ ନାମ କରିବାର ଉଦ୍ଦେଶ୍ୟ କଣ ? ଏତଦ୍ଦ୍ୱାରା ଅଉ ଏକ ଆଶଙ୍କା ଏହି ହୁଏ ଯେ, କବି ଅଳ୍ପ ଜାଣି କେବଳ ମହାସ୍ପୃହୀ କଳ୍ପନାବଳରେ ଏପରି ଦୁଃସାହସିକ କର୍ମରେ ପ୍ରବୃତ୍ତ ହୋଇଅଛନ୍ତି । ସୁତରାଂ ପୁଣ୍ୟ ମହାଭାରତ ଗ୍ରନ୍ଥରେ ବହୁ ଦୋଷ ରହିବାର ସମ୍ଭାବନା ! ହୁଏତ ସେଥିଯୋଗୁଁ ଧର୍ମଭୀରୁ ପୁରୁଷମାନଙ୍କ ତୀବ୍ର କଟାକ୍ଷରୁ ରକ୍ଷା ପାଇବା ପାଇଁ ସ୍ୱକୃତକ ସାରଳା ଦେବୀଙ୍କ ଭଣିତ ବୋଲି ପ୍ରକାଶ କରିଥିବେ ।

ଉତ୍କଳରେ ଯେତେ ପୁରାଣ, ରାମାୟଣ ଓ ମହାଭାରତ

ଲିଖିତ ହୋଇଅଛି, ସେ ସମସ୍ତଙ୍କ ଅପେକ୍ଷା ଶାରଳା ମହାଭାରତ ଆକାରରେ ବଡ଼ । ସର୍ବ ପ୍ରଥମେ କବି କିପରି ଉପକରଣ ସଂଗ୍ରହ କରି ଏହି ମହାପ୍ରାସାଦ ନିର୍ମାଣ କଲେ? ବୋଧ ହୁଏ ସେ କାଳରେ ଉପକରଣ ବଡ଼ ସୁଲଭ ଥିଲା । ଏହି ମହାଭାରତର ଉପକରଣ ଜାଣିବାକୁ ହେଲେ ଅମ୍ଭମାନଙ୍କୁ କାଳସ୍ରୋତର ପ୍ରତିଲୋମରେ ପୁଣି ସେହି କପିଳେନ୍ଦ୍ରଦେବଙ୍କ ଶାସନକାଳ ମଧ୍ୟରେ ପ୍ରବେଶ କରି ତଦାନୀନ୍ତନ ସମାଜ ଏବଂ ତହିଁର ଶାସିତ ଦେଶର ଅବସ୍ଥାଦି ଦେଖିବାକୁ ହେବ । ଇତିହାସ ଦର୍ପଣରେ ଅମ୍ଭେମାନେ ଦେଖି ପାରୁଅଛୁଁ ଯେ; କପିଳେନ୍ଦ୍ର ଦେବ ଅତି ସାମାନ୍ୟ ଅବସ୍ଥାରୁ ସୌଭାଗ୍ୟ କ୍ରମେ ଆଜି ବିଶାଳ ରାଜ୍ୟର ଅଧିକାରୀ* । ଦକ୍ଷିଣରେ କୃଷ୍ଣାତୀର ପର୍ଯ୍ୟନ୍ତ ଏହାଙ୍କର ପ୍ରତାପ ପତାକା ଉଡ୍ଡୀୟମାନ ଥିଲା । ଅଷ୍ଟାଦଶ ବୀରପୁତ୍ର ପୁଣି ଅଧିକ

ମହାଭାରତ ରଚନା କାଳୀନ ସମାଜର ଅବସ୍ଥା ଓ ରୁଚି ।

* ବାସୁଦେବବଂଶୀୟ ଶେଷ ରାଜା ନିଃସନ୍ତାନ ଥିଲେ ; ସୁତରାଂ ସେ ଉକ୍ତ ବଂଶୀୟ କପିଳସାମନ୍ତ ନାମକ ଜଣଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । କଥିତ ଅଛି ଏହି କପିଳସାମନ୍ତ ଏକସମୟରେ ଜଣେ ବ୍ରାହ୍ମଣର ଗୋଚାରଣ କର୍ମରେ ନିଯୁକ୍ତ ଥିଲେ । ଜଗନ୍ନାଥ ମନ୍ଦିରକୁ ଯାଉ ଯାଉ ଶେଷ ରାଜା ଚେତ୍ର ବାସୁଦେବ କପିଳଙ୍କର ସବିଶେଷ ବୁଦ୍ଧିମତ୍ତାର ପରିଚୟ ପାଇ ତାହାଙ୍କୁ ନିଜର ଭବିଷ୍ୟର ଉତ୍ତରାଧିକାରୀ ମନୋନୀତ କଲେ । କିଛିକାଳ ଉତ୍ତାରୁ କପିଳ ଆପଣାର କାର୍ଯ୍ୟଦକ୍ଷତାର ପରିଚୟ ଦେଇ ବାସୁଦେବଙ୍କ ରାଜସଭାର ମନ୍ତ୍ରିତ୍ୱ-ଲାଭରେ କୃତକାର୍ଯ୍ୟ ହେଲେ । କେହି୨ କହନ୍ତି ଶେଷ ରାଜା ରାଜତ୍ୱ କରୁଥିବା ସମୟରେ ଉତ୍ତରରୁ ମୁସଲମାନମାନେ ଆସି ଓଡ଼ିଶା ଆକ୍ରମଣ କରିଥିଲେ । କପିଳ ସେମାନଙ୍କ ସହିତ ସନ୍ଧିସ୍ଥାପନାର୍ଥ ପ୍ରେରିତ ହୋଇ ପ୍ରତିଭୂରୂପେ ସେମାନଙ୍କ ଶିବିରରେ ରକ୍ଷିତ ହୋଇଥିଲେ ଏବଂ ରାଜା ବାସୁଦେବଙ୍କ ମୃତ୍ୟୁ ଉତ୍ତାରେ ଓଡ଼ିଶାର ରାଜ୍ୟଭାର ଗ୍ରହଣ ନିମନ୍ତେ ପୁନଃ ପ୍ରେରିତ ହେଲେ । ––ଆର୍ଯ୍ୟକୃତ ଓଡ଼ିଶା ଇତିହାସ ପୃ ୭୨ ।

ଅନନ୍ଦ ବର୍ଦ୍ଧନ କରୁଥିଲେ । ତଥାପି ଏହି କାମୁକ ରାଜାଙ୍କ ନିର୍ଦ୍ଧାରଣ ଅନୁସାରେ ଉପପତ୍ନୀ ଗର୍ଭଜାତ ପୁରୁଷୋତ୍ତମ ସ୍ୱୀୟ ଉତ୍ତରାଧିକାରୀ ହୋଇଥିଲେ । ନିଜ ପୁତ୍ରମାନେ ପୈତୃକ ରାଜ୍ୟର ଅଧିକାର ନ ପାଇ ଇତସ୍ତତଃ ଭ୍ରମଣ କରି ସ୍ୱ-ବାହୁବଳରେ ଓଡ଼ିଶାର ସୀମାନ୍ତ ପ୍ରଦେଶମାନଙ୍କରେ ରାଜ୍ୟ ବିସ୍ତାର କଲେ । ଏକେ ହିନ୍ଦୁସାଧାରଣ ଅଦୃଷ୍ଟବାଦୀ, ତହିଁରେ ପୁଣି ଉକ୍ତ ଦୁର ଘଟଣା ପ୍ରତ୍ୟକ୍ଷ କରି 'କିଂ ନକରୋତି ବିଧିର୍ଯଦିରୁଷ୍ଟଃ କିଂ ନ କରୋତି ସ ଏବ ହି ତୁଷ୍ଟଃ' ଏହି ଧାରଣା ସମାଜ ମଧ୍ୟରେ ଦୃଢ଼ୀଭୂତ ହୋଇଥିଲା । ତଥାପି ସେମାନଙ୍କ ହୃଦୟରେ ସାହସ ଓ ଉଦ୍ୟୋଗ ଯଥେଷ୍ଟ ପରିମାଣରେ ଥିଲା । ଗଙ୍ଗବଂଶୀୟ ରାଜାମାନେ ବହୁବାର ଏମାନଙ୍କୁ ଘେନି ଶତ୍ରୁମାନଙ୍କ ସହିତ ଯୁଦ୍ଧ କରି ଜୟଲାଭ କରିଥିଲେ ଏବଂ ଯୁଦ୍ଧର ସମ୍ଭାବନାରେ ସେମାନେ ବହୁ ଗଜ, ଅଶ୍ୱ ଓ ପଦାତିକର ଭରଣପୋଷଣ ବ୍ୟୟଭାର ବହନ କରୁଥିଲେ । ଆକସ୍ମିକ ବିପଦରେ ସୈନ୍ୟ ସଂଗ୍ରହ ଲାଗି କେତେକ ପ୍ରଜାଙ୍କୁ ନିଷ୍କର ଭୂମିମଧ୍ୟ ଖଞ୍ଜି ଦିଆ ଯାଇ ଥିଲା । ଏହା ଛଡ଼ା ସେମାନଙ୍କର ରାଜତ୍ୱରେ ପୂର୍ତ୍ତକାର୍ଯ୍ୟାଦିରେ ମଧ୍ୟ ପ୍ରଚୁର ବ୍ୟୟ ହୋଇଥିବାର ନିଦର୍ଶନ ରହିଅଛି । ଏତେ ବ୍ୟୟ ହୋଇ ସୁଦ୍ଧା ରାଜକୋଷର କ୍ଷୟ ହୋଇ ନ ଥିଲା କିମ୍ବା ପ୍ରଜା-ମାନଙ୍କର ଅଭାବ ନ ଥିଲା । ସେମାନେ ସାଂସାରିକ ବ୍ୟୟ ନିର୍ବାହ କରି କିଛି୨ ସଞ୍ଚୟ ଦ୍ୱାରା ସୁଖରେ କାଳଯାପନ କରୁଥିଲେ । ରାଜକୋଷ ବହୁ ଧନ ରତ୍ନ ସମନ୍ୱିତ ଥିଲା । ଏକା ଅନଙ୍ଗ ଭୀମଦେବ ୧୨ ବର୍ଷ ରାଜତ୍ୱ ମଧ୍ୟରେ ଚାଳିଶ ଲକ୍ଷ ମାଢ଼ ସ୍ୱର୍ଣ୍ଣ ଏବଂ ୭ ଲକ୍ଷ ୮୦ ହଜାର ସୁବର୍ଣ୍ଣ ମୂଲ୍ୟର ରତ୍ନ ମଣି ମୁକ୍ତା ସଞ୍ଚୟ କରିଥିଲେ । ଏକଥାମାନ ଶୁଣି ପ୍ରଜାଗଣ

ରାଜକୋଷସ୍ଥ ଧନର କଳନା କରି ପାରୁ ନଥିଲେ ।
ବିଶେଷତଃ ସାଧାରଣଙ୍କ ନିକଟରେ ସତ୍ୟ ପ୍ରକାଶ କରିବାର
କୌଣସି ସୁବିଧା ନଥିବାରୁ ଅଥବା ତତ୍ସମ୍ବନ୍ଧରେ ପୁସ୍ତକାଦି
ଲିଖିତ ହୋଇ ନଥିବାରୁ ଏସବୁସମ୍ବନ୍ଧରେ ଜନଶ୍ରୁତି ନାନା
ଆକାର ଧାରଣ କରୁଥିଲା । ସାଧାରଣ ପ୍ରଜାଏ ଦେଶଭାଷାର
କୌଣସି ପୁସ୍ତକ ନପାଇ ସର୍ବଦା ଏହିପ୍ରକାର ଜନଶ୍ରୁତିରେ
ଆତ୍ମବିନୋଦନ କରୁଥିଲେ ଏବଂ କେହିଂ (ଯେ ଅପେକ୍ଷା-
କୃତ ଚତୁର) ନିଜ କଳ୍ପନାଲେପରେ ଅନ୍ଧର ବିଶେଷିତ
କରି ଦେଉଥିଲେ । ଏହି ଜନଶ୍ରୁତି ସେମାନଙ୍କ ସାହିତ୍ୟର
ଏକମାତ୍ର ସମ୍ବଳ ହେବାରୁ ସେକାଳରେ ନାନାସ୍ଥାନ ଏବଂ
ବ୍ୟକ୍ତି ସମ୍ବନ୍ଧରେ ନାନାପ୍ରକାର କିଂବଦନ୍ତୀ ଅବାଧ ଭାବରେ
ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲା । ତଦାନୀନ୍ତନ ପ୍ରଜାସାଧାରଣଙ୍କର
ଚାତୁର୍ଯ୍ୟ ବୁଦ୍ଧିମତ୍ତା ଏବଂ କଳ୍ପନା ପ୍ରଭୃତି ସେହି କିଂବଦନ୍ତୀରେ
ପର୍ଯ୍ୟବସିତ ହୋଇଥିଲା । ଏହି କିଂବଦନ୍ତୀ ଗୁଡ଼ିକର
ସତ୍ୟାସତ୍ୟ ପ୍ରତି ଅଦୌ ଦୃଷ୍ଟି ନଦେଇ ଅନ୍ଧବିଶ୍ୱାସୀ
ସାଧାରଣ ଶ୍ରୋତୃବର୍ଗ ଅଗ୍ରହ ଏବଂ ମହାନନ୍ଦ ସହକାରେ
ତାହା ଗ୍ରହଣ କରି ଚିତ୍ତ ରଞ୍ଜନ କରୁଥିଲେ । ଏଣେ ବୌଦ୍ଧ
ଧର୍ମ ଓଡ଼ିଶାରେ ବିଲୁପ୍ତ ପ୍ରାୟ ହୋଇଥିଲେହେଁ ତାହାର
ବିଲୟକାଳୀନ ନାନା ବିରୂପ ଉପଧର୍ମର ସୃଷ୍ଟି ଓ ପ୍ରସାର
ସଙ୍ଗେ କିଂବଦନ୍ତୀ—ପ୍ରିୟ ପୂର୍ବ ସମାଜ ଅନ୍ଧର କିମ୍ଭୂତକିମାକାର
ଧାରଣ କଲା ? ଶକୁନଶାସ୍ତ୍ରର ମର୍ମ ଆବାଳବୃଦ୍ଧବନିତା
ସମସ୍ତଙ୍କୁ ଅଳ୍ପାଧିକରେ ଜଣାଥିଲା ଏବଂ ଶ୍ରଦ୍ଧାସହକାରେ
ତାହା ପାଳିତ ହେଉଥିଲା । ବିବାହରୁ ସାମାନ୍ୟ ଯାତ୍ରା
ପର୍ଯ୍ୟନ୍ତ ଏବଂ ଧାନବୁଣିବାଠାରୁ ଶାଗ ବୁଣିବା ପର୍ଯ୍ୟନ୍ତ
ସର୍ବପ୍ରକାର ନିତ୍ୟ ନୈମିତ୍ତିକ ଅନୁଷ୍ଠାନରେ ଜ୍ୟୋତିଷ-

ସମ୍ପୃକ୍ତ ଯୋଗଲଗ୍ନାଦ୍ଧ ଅଶିଷ୍ଟଲଭାବରେ ବର୍ଣ୍ଣନ କରାଯାଉ ଥିଲା । ସାଧାରଣ ଶିକ୍ଷା ଓ ଧର୍ମୋପଦେଶର ଏକାନ୍ତ ଅଭାବ ଥିବାରୁ ଗ୍ରାମ୍ୟ ଭାବ ଓ କଳହ ସାଧାରଣଙ୍କର ମୁଖ ଭୂଷଣ ହୋଇ ଥିଲା । ଏପରିକି ସେମାନଙ୍କର ହାସ ପରିହାସଠାରୁ ତିରସ୍କାର ପର୍ଯ୍ୟନ୍ତ ସମସ୍ତ କଥା କେବଳ ଅଶ୍ଳୀଳଭାବରେ ପୂର୍ଣ୍ଣଥିଲା । (୧) ଅନ୍ତର ମଧ୍ୟ ଆହାରବିହାରାଦିରେ ନିଶ୍ଚିନ୍ତ ଥିବାରୁ ଆମୋଦ ପ୍ରମୋଦର ସ୍ପୃହା ସମସ୍ତଙ୍କ ମନରେ ଜାଗରିତ ହୋଇଥିଲା । ଗାନ ବାଦ୍ୟ ପ୍ରତି ସାଧାରଣଙ୍କର ମନ ମଧ୍ୟ ଧୀରେ ଧୀରେ ଅକୃଷ୍ଟ ହେଉଥିଲା । ଏହିପରି ବିଳାସ ବାସନା ବା କାମଜବ୍ୟସନ ସତ୍ତ୍ୱେ ସେମାନଙ୍କଠାରେ ଦୁଃସାହସାଦି କ୍ରୋଧଜବ୍ୟସନର ଅଭାବ ନଥିଲା । ଯବନ ଯୁଦ୍ଧଲାଗି ସବୁରି ଧମନୀରେ ଉଷ୍ଣ ଶୋଣିତ ଧାବମାନ ହେଉଥିଲା । (୨) ରାଜେଶ୍ୱର କପିଳେନ୍ଦ୍ର ରାଜ୍ୟଆଇ କେବଳ ଯବନ ଯୁଦ୍ଧ ପ୍ରତୀକ୍ଷାରେ ଦାକ୍ଷିଣାତ୍ୟରେ ଅବସ୍ଥାନ କରୁଥିଲେ (୩) ଏବଂ ବାହାମଣୀ ରାଜ୍ୟରୁ ସମସ୍ତ ମୁସଲମାନ ଅଧିକାର କାଢ଼ି ନେବା ପାଇଁ ତୈଲିଙ୍ଗପତିଙ୍କ ସହିତ ମିଳି ଘୋର ଯୁଦ୍ଧ କରିଥିଲେ । ପ୍ରଥମ ଯୁଦ୍ଧରେ ହଠାତ୍ ଶତ୍ରୁସେନାର ଆକ୍ରମଣରେ ପୃଷ୍ଠଭଙ୍ଗଦେଇ ପାଞ୍ଚଲକ୍ଷ ମୁଦ୍ରାଦ୍ୱାରା ସନ୍ଧିକ୍ରୟ କରିଥିଲେ

---

(୧) ବର୍ତ୍ତମାନେ ଏପ୍ରକାର ଅଭ୍ୟାସ ସାଧାରଣଙ୍କ ମୁଖରୁ ଲୋପ ପାଉଅଛି, ତଥାପି ସେ ସଂସ୍କାରରୁ ପୂର୍ବଗତ ଅନୁମେୟ ।

(୨) କପିଳେନ୍ଦ୍ରଦେବଙ୍କ ରାଜତ୍ୱମଧ୍ୟରେ ଯେତେ ମୁସଲମାନ ଆକ୍ରମଣ ଓ ଯୁଦ୍ଧ ହୋଇଅଛି, ତତ୍ପୂର୍ବବର୍ତ୍ତୀ ବା ତତ୍ପରବର୍ତ୍ତୀ କୌଣସି ରାଜାଙ୍କ ସମୟରେ ତେତେ ହୋଇ ନାହିଁ ।

(୩) ସେ ସମୟରେ ରାଜମହେନ୍ଦ୍ରୀ ତାହାଙ୍କର ରାଜଧାନୀ ଥିଲା । ଏହାକୁ କବି ଅନେକସ୍ଥଳରେ ମହେନ୍ଦ୍ର ଦେଶ ବୋଲି ବର୍ଣ୍ଣନା କରିଅଛନ୍ତି ଏବଂ ରାଜାଙ୍କୁ ଅତିପ୍ରତାପୀ ଓ ଐଶ୍ୱର୍ଯ୍ୟଶାଳୀ ବୋଲି ବର୍ଣ୍ଣନା କରିଅଛନ୍ତି ।

(୪) ସତ୍ୟ; କିନ୍ତୁ ପଶ୍ଚାତ୍ ଉତ୍ତେଜିତ ସୈନ୍ୟମାନଙ୍କୁ ଯେଉଁ ଶତ୍ରୁମାନଙ୍କର ଦୁର୍ଦ୍ଦଶା ବିଧାନ କରିଥିଲେ (୫) ସେହି ସମୟର ଘନ ଘନ ଯୁଦ୍ଧ ଓ ଜୟବାର୍ତ୍ତା ପାଇ ପ୍ରଜା-ସାଧାରଣ ମହାଭାରତୀୟ ଯୁଦ୍ଧ କାହାଣୀକୁ ପ୍ରତ୍ୟକ୍ଷ ଅନୁଭବକୁ ଆଣିଥିଲେ । ଘରେ ଘରେ ଯୁଦ୍ଧ ଲାଗି ମହାଭାରତ ଆଲୋଚନାର ପ୍ରୟୋଜନ ହୋଇଥିଲା । ସୈନିକ ସମ୍ପ୍ରଦାୟ ଛଡ଼ା ଯେଉଁମାନେ କୃଷିର ବୃତ୍ତି ଭୋଗ କରୁଥିଲେ, ସେମାନେ ନ୍ୟାୟତଃ ଯୁଦ୍ଧ ବିଦ୍ୟା ଶିକ୍ଷା କରୁଥିଲେ । ଅନ୍ୟମାନେ ମଧ୍ୟ ମୃଗୟା ବିନୋଦ ଓ ହିଂସ୍ର ଜନ୍ତୁର ଆକ୍ରମଣରୁ ଆତ୍ମରକ୍ଷା କରିବାନିମିତ୍ତ ଆପାତତଃ ଧନୁର୍ଦ୍ଧରର ବ୍ୟବହାର ଶିକ୍ଷା କରି ନିକଟସ୍ଥ ଜଙ୍ଗଲରେ ବାଘ ଗଣ୍ଡା ଆଦି ବଧ କରୁଥିଲେ । ଏହା ବ୍ୟତୀତ ପ୍ରତି ଗ୍ରାମରେ ନାନା ପ୍ରକାର ମଲ୍ଲଯୁଦ୍ଧ ମଧ୍ୟ ଅଭ୍ୟାସ କରି ଶରୀରର ବଳବୃଦ୍ଧି ସାଧନ କରୁଥିଲେ ।* ସୁତରାଂ କେବଳ ସୈନିକ ବିଭାଗର କାହିଁକି ଅପର ସାଧାରଣଙ୍କର ହୃଦୟ ମଧ୍ୟ ବୀରରସାବେଶରେ ଉଚ୍ଛୃଙ୍ଖଳ ହୋଇ ଉଠିଲା । ଏପରି ଅବସ୍ଥାରେ ମହାଭାରତ ଯୁଦ୍ଧ ଯେ ସମସ୍ତଙ୍କ ଆଖି ଆଗରେ ନାଚୁଥିଲା, ସେଥିରେ ଆଉ ସନ୍ଦେହ କଣ? ବୋଧ ହୁଏ ପ୍ରତ୍ୟେକ ନିତ୍ୟ ଘଟିତ

(୪) ସଭା ପର୍ବରେ ବିଜିତ ରାଜାମାନଙ୍କର ଉପଢୌକନ ସ୍ୱରୂପ ଲକ୍ଷ ଲକ୍ଷ ମୁଦ୍ରା ଓ ଗଜାଶ୍ୱାଦି ଏହି ଛାୟା ଅବଲମ୍ବନରେ ଲିଖିତ ହେଲା ପରି ବୋଧ ହୁଏ ।

(୫) ଏହି ସୁବର ଚିଚକୁ ଲକ୍ଷ୍ୟକରି ସମ୍ଭବତଃ ଦ୍ରୋଣପର୍ବ ପ୍ରାରମ୍ଭରେ ଯୁଦ୍ଧ ବିଶାରଦ ମ୍ଳେଚ୍ଛ ପତିର ଯୁଦ୍ଧ କଥା ବର୍ଣ୍ଣିତ ଅଛି । ମ୍ଳେଚ୍ଛରାଜାର ଅପୂର୍ବ ରଣ କୌଶଳ ବର୍ଣ୍ଣିତ ହୋଇ ଥିବାରୁ ବୋଧ ହୁଏ ମୁସଲମାନମାନେ ହିନ୍ଦୁଙ୍କୁ ପରାସ୍ତ କରି ଦେଇ ଥିଲେ ଏବଂ ବହୁ ମୁଦ୍ରା ନେଇ ସନ୍ଧିସ୍ଥାପନ କରିବାରେ ସମ୍ମତ ହୋଇଥିଲେ ।

* ସଭାପର୍ବର ମଲ୍ଲଯୁଦ୍ଧ ବର୍ଣ୍ଣନା ସ୍ଥଳରୁ ଏହା ଅନୁମେୟ ।

ନିବାଦବସଂବାଦରେ ମହାଭାରତର ଉଦାହରଣ ଅବତାରଣା କରି ମୀମାଂସା କରୁଥିଲେ । ସମ୍ଭବତଃ ବୃଦ୍ଧ ବୃଦ୍ଧା ସମସ୍ତେ ମହାଭାରତର ଗୋଟିଏ ଗୋଟିଏ କଥାକୁ ପଲ୍ଲବିତ କରି ସନ୍ତାନମାନଙ୍କର ପରିତୃପ୍ତି ନିମିତ୍ତ କାହାଣୀ ଭାଷାରେ ପ୍ରକାଶ କରୁଥିଲେ ।

ଷ୍ଣଜନ୍ମା କବି ଏହିପରି ସମୟରେ ମହାଭାରତର ପ୍ରୟୋଜନୀୟତା ଉତ୍ତମରୂପେ ଉପଲବ୍ଧି କରି ଏବଂ ଚିରଅନ୍ଧରେ ସ୍ତୂପୀକୃତ ମାଲମଶଲାମାନ ପାଇ ତଦାନୀନ୍ତନ ଜନସାଧାରଣଙ୍କର ରୁଚିକି ଚାହିଁ ମହାଭାରତ ମହାପ୍ରାସାଦ ନିର୍ମାଣରେ ମନ ବଳାଇଲେ । କିମ୍ବଦନ୍ତୀର ସତ୍ୟ ଉପରେ ନିର୍ଭର କଲେ ଜଣାଯାଏ ଯେ, କବି ଶୈଶବରେ ବୃଦ୍ଧ ପିତାଙ୍କ

ରଚନା ।

ମୁଖରୁ ମହାଭାରତ କଥା ଶୁଣି ଥିଲେ । ଏହା ତାହାଙ୍କ ସ୍ୱାଭାବିକ ପୁରାଣାନୁରାଗିତାର ବୀଜ । ଅନନ୍ତର କ୍ରମଶଃ ବୟୋବୃଦ୍ଧି ଅନୁସାରେ ଏହି କୌତୂହଳର ଆଧିକ୍ୟ ଯୋଗୁଁ ସେ କାଳର ଶିକ୍ଷା ପଦ୍ଧତି ଅନୁଯାୟୀ ଅଭିଧାନ କିମ୍ବା ବ୍ୟାକରଣ ସୂତ୍ର ମୁଖସ୍ଥ ନ କରି (୧) କେବଳ ପୁରାଣମାନଙ୍କ ପ୍ରତି ଧାବିତ ହେଲେ ସେ ବହୁପୁରାଣ ଓ ମହାଭାରତର କଥାମାନ ବ୍ରାହ୍ମଣ ପଣ୍ଡିତ ଏବଂ ପୁରୋହିତଙ୍କଠାରୁ (୨) ଅଗ୍ରହ ସହକାରେ ଶୁଣି ସେହି ଗୁଡ଼ିକ ମାନସକୋଷରେ ସଞ୍ଚିତ ସଞ୍ଚୟ କରୁଥିଲେ । ବିଶେଷତଃ ଶାରଳା ମନ୍ଦିରରେ ତାହାଙ୍କର

(୧) ନ ପଢ଼ିଲି ନ ଘୋଷିଲି ଗତ କଲି ପୁରାଣ-ପୁରାଣ ଅଭ୍ୟାସ କଲି ଶାରଳା ପ୍ରସାଦେ । ଉ: ପ: ପୃ ୧୩ ।
ଏଠାରେ ନ ଘୋଷିଲି ଅଭିଧାନ ଓ ବ୍ୟାକରଣ ପ୍ରତି ଲକ୍ଷ୍ୟ ।

(୨) ବାମଦେବ ପୁରୋହିତ ବୋଲେ ଶାସ୍ତ୍ର-ଯୋଗେ; ମୁହିଁ ତାହା ବର୍ଣ୍ଣାଇଲି ସର୍ବ ଶ୍ରୁତି ଯୋଗେ । ମ: ପ:

ନାନା ପୁରାଣ ଶୁଣିବାର ସୁବିଧା ହେଉଥିଲା । ଶାରଳା ବଡ଼ ପୁରାଣବତ୍ସଳା ବୋଲି କବିଙ୍କର ଏହି ଉକ୍ତିରୁ ପ୍ରକାଶ ପାଉଅଛି । 'ସର୍ବମଙ୍ଗଳାରୂପୀ ମାତା ଯେ ମନ୍ତ୍ରଭୋଳା—ଗ୍ରନ୍ଥାର୍ଥ ଶୁଣଇ ସେ ରହସ୍ୟ କୁତୂହଳା' ଆଃ ପଃ । କବି ପୁରାଣମାନଙ୍କ ମଧ୍ୟରୁ ବିଶେଷରେ ବିଷ୍ଣୁପୁରାଣ ଓ ଶିବପୁରାଣର କଥା ଅନୁସୃତ କରିଥିଲେ, ତେଣୁ ଏହି ପୁରାଣଦ୍ୱୟର ସ୍ମୃତିପଥବର୍ତ୍ତୀ କଥାଂଶମାନ ସ୍ୱୀୟ ମହାଭାରତର ସ୍ଥଳବିଶେଷରେ ଯୋଗ କରିଅଛନ୍ତି । ପ୍ରତ୍ୟହ ନିଶା ମୁଖରେ କବି ଦେବୀଙ୍କ ମନ୍ଦିରରେ ମହାଭାରତାଦି ଶୁଣି, ରାତିରେ ଯାହା ବସି ରଚନା କରୁଥାନ୍ତି, ତାହା ତହିଁ ଆରଦିନ ଇଷ୍ଟ ଦେବୀଙ୍କ ନିକଟରେ ପାଠ କରନ୍ତି । କବିଙ୍କର ଉକ୍ତି ଛଡ଼ା ଏପରି ଅନୁମାନ କରିବାର ଆଉ ଗୋଟିଏ କାରଣ ଏହି ଯେ, ସେ ପ୍ରତ୍ୟେକ ପର୍ବର ବିଶେଷ ଘଟନା ବା ଯୁଦ୍ଧାଦିବର୍ଣ୍ଣନା ଶେଷରେ ପ୍ରାୟ ସର୍ବଦା ଏକାପରି ଉକ୍ତି (ଭଣିତା) ପ୍ରକାଶ କରିଅଛନ୍ତି, ସେଥିରୁ ସ୍ପଷ୍ଟ ଜଣା ଯାଏ—ଉକ୍ତ ଅଂଶମାନ ଏକ ଉଚ୍ଛ୍ୱାସର ବା ଏକଦିନର ଲେଖା । ଦେବୀ ମନ୍ଦିରରେ କବି ନିଜ ମହାଭାରତ ପାଠ କଲାବେଳେ ବିଜ୍ଞ ବ୍ରାହ୍ମଣ ପଣ୍ଡିତ ଏବଂ ପୁରୋହିତଙ୍କ କଟୂକ୍ତି ଭୟ କରୁଥିଲେ ଏବଂ ସେଥି ପାଇଁ ସେ ପ୍ରତ୍ୟହ ଭୟ ଓ ବିନୟ ପ୍ରଦର୍ଶନପୂର୍ବକ ସେମାନଙ୍କର ବଶଂବଦ ହେଉଥିଲେ । "ନ ପଢ଼ିଲି ଅକ୍ଷର ମୁଁ ନୁହେ ଶାସ୍ତ୍ର-ବାଦୀ, ପଣ୍ଡିତଙ୍କ ସଙ୍ଗେ ବସି ନକଲି ସମାଧି । କୁସ୍ଥାନେ ବସିଲି ନ ବସିଲି ବିପ୍ରଗୋଷ୍ଠୀ—ଶିଶୁବୁଦ୍ଧି ମୋହର ବରଷ ଅଲପହି-ମଃ ପଃ । କଥିତ ଅଛି କବି ମହାଭାରତ ଲେଖିସାରି ଲିଖିତ ତାଳପତ୍ରମାନ ଅଗ୍ରେ ପାର୍ଶ୍ୱବାହିନୀ ବୃଦ୍ଧ ନଦୀ (୧) ଗର୍ଭରେ

(୧) ପ୍ରଚଳିତ ନାମ 'ବୁଢ଼ାନଈ' ଯାହାକି କିଂବଦନ୍ତୀରୁ ପ୍ରକାଶ ପାଉଅଛି ଯେ, ଏହି ନଦୀରେ ପୂର୍ବେ ବାଣିଜ୍ୟ ନୌକା ଯାତାୟାତ କରୁଥିଲା । ଏକଦା

ପକାଇ ଦେଲେ । ସେଥି ମଧ୍ୟରୁ ଯାହା ଭସି ଉଠିଲା ସେ ଗୁଡ଼ିକ ଅଗ୍ରପଶ୍ଚାତ୍ କ୍ରମ ଅନୁସାରେ ସଙ୍କଳିତ କରି ପୋଥି ବାନ୍ଧିଲେ ଏହିପରି ଗୋଟିଏ² କୌତୁକ କାହାଣୀ ଅନ୍ଧ କବିମାନଙ୍କ ସମ୍ବନ୍ଧରେ ଶୁଣା ଯାଇ ଥାଏ ; ତାହା କବିଙ୍କର ଆଧ୍ୟାତ୍ମିକତାର ନିଦର୍ଶନ । ମହାରାଷ୍ଟ୍ରର ଅନ୍ଧ କବି ଭକ୍ତ ତୁକାରାମଙ୍କ ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀଟି ପ୍ରଚଳିତ ଅଛି, ଏହାକୁ ତାହାର ଭଗିନୀ କହିଲେ ଚଳେ । (୨) ସେ ଯାହା ହେଉ, ଏହି କିମ୍ବଦନ୍ତୀରେ କିଛି ସତ୍ୟ ଥିଲା ପରି ଜଣା ଯାଉ ନାହିଁ । ସମ୍ଭବତଃ ସଂସ୍କୃତାନୁରାଗୀ ସମାଜ ମଧ୍ୟରେ କବିଙ୍କର ପ୍ରତିଷ୍ଠାଲୋପଭୟରେ ତଦୀୟ ବଂଶଧାରଣମାନେ ଏପରି ଗୋଟିଏ କଳ୍ପନାର ସୁଦର୍ଶନ ଚକ୍ର ଦ୍ୱାରା ପୂର୍ବପୁରୁଷଙ୍କୁ ରକ୍ଷା-କରିଅଛନ୍ତି । ଏପରି କଳ୍ପନାର ଦୁଇ ଗୋଟି ଅଭିପ୍ରାୟ ଥିଲା ପରି ବୋଧ ହୁଏ । ଗୋଟିଏ ଏହି, କବି ମହାଭାରତର କଥା ମୌଳିକ କ୍ରମାନୁସାରେ ଲେଖି ନାହାନ୍ତି । ଅନ୍ଧର ମଧ୍ୟ ସେ ଗ୍ରନ୍ଥ ନ ପଢ଼ି ବହୁଳ କଥାର କ୍ରମ ରକ୍ଷା କରିବା ଅସମ୍ଭବ ।

---

କୌଣସି ସୌଦାଗରର ନୌକା ଏଥିରେ ବୁଡ଼ିଯାଇ ଥିବାରୁ ଏହାର ନାମ ବୁଡ଼ି ନଈ ହୋଇଅଛି ; କିନ୍ତୁ କବି ଗ୍ରନ୍ଥରେ ଏହାର ନାମ ବୁଦ୍ଧନଦୀ ବା ବୁଦ୍ଧମାତା ବୋଲି ପ୍ରକାଶ କରି ଅଛନ୍ତି ।

(୨) କଥିତ ଅଛି, ଭକ୍ତ ତୁକାରାମ ଇଷ୍ଟଦେବ ବିଠଲ୍‌ଙ୍କ ମନ୍ଦିରରେ ଭଜନ ରଚନା କରୁଥିବା ସମୟରେ ତତ୍ରତ୍ୟ ବ୍ରାହ୍ମଣମାନେ ଶୂଦ୍ରର କବିତ୍ୱାଧିକାର ଦେଖି ତାଙ୍କ ପ୍ରତି ବଡ଼ ଈର୍ଷା ପ୍ରକାଶ କଲେ ଏବଂ ସେହି ଅନଧିକାର ଚର୍ଚ୍ଚାରୁ ବିରତ ହେବାକୁ ବାରଂବାର ତିରସ୍କାର କଲେ । କବି ସେମାନଙ୍କ ଉତ୍ପୀଡ଼ନରେ ଲିଖିତାଂଶ ଦୁଇଖଣ୍ଡ ପଥର ପଟା ମଧ୍ୟରେ ରଖି ତାହାକୁ ଗୋଟିଏ ଲୁଗାରେ ଗୁଡ଼ାଇ ପାର୍ଶ୍ୱ ବାହିନୀ ନଦୀରେ ବୁଡ଼ାଇ ଦେଇ ଆସିଲେ ଏବଂ ଇଷ୍ଟଦେବଙ୍କର ପୂର୍ବବତ୍ ଉପାସନା କଲେ । ତହିଁର ତେର କିଂବା ଚୌଦ ଦିନ ଉତ୍ତାରେ ତାହା ଜଳ ଉପରକୁ ଭସି ଉଠିଲା । ଠାକୁରକୃତ ବୋମ୍ବାଇ-ଚକ୍ର ।

ଅନ୍ୟଟି ଏହି ଯେ, କବି ମୂଳ ମହାଭାରତର ଅନେକ ପ୍ରସଙ୍ଗ ଛାଡ଼ି ଯାଇଅଛନ୍ତି । ତାହାଙ୍କର ଯାହା୨ ମନେ ଥିଲା କେବଳ ସେହି ସବୁ କଥା ସେ ଠିକେ ଠିକେ ବର୍ଣ୍ଣନା କରିଅଛନ୍ତି । "କହିଲି ମହାଭାରତ ଠିକ ଠିକ ଭାବେ" । କବିଙ୍କର ଏହି ଦୁଇ ପ୍ରମାଦ ବା ତ୍ରୁଟିର ମାର୍ଜନା ଲାଗି କିମ୍ବଦନ୍ତୀଟି ଗଠିତ ହୋଇଥିଲେହେଁ ତଦ୍ଦ୍ୱାରା କବିଙ୍କର ମର୍ଯ୍ୟାଦାବୃଦ୍ଧି ହୋଇ ନାହିଁ ; କେବଳ ସତ୍ୟର ଅପଳାପ ହେଲା । ଯଦି କେହି ଏହା ସତ୍ୟର ଅପଳାପ ବୋଲି ସ୍ୱୀକାର ନ କରନ୍ତି, ତେବେ ଅମ୍ଭେମାନେ ତାହାଙ୍କ ଆପତ୍ତିର ଖଣ୍ଡନରେ ଆଉ ଦୃଢ଼ ପ୍ରମାଣ ଏହି ଦେଇ ପାରୁଁ ଯେ, କବି ତ କିଛି ସମଗ୍ର ମହାଭାରତ ସଂଗ୍ରାମରେ ଥାଇ ଲେଖି ନ ଥିଲେ ଯେ ବୃଦ୍ଧ ନଦୀରେ ତାହା ଭସାଇ ଦେଲେ ? ତାଙ୍କ ଗ୍ରନ୍ଥ ପାଠରୁ ସ୍ପଷ୍ଟ ଜଣା ଯାଏ ସେ ପୁରୀ ଭୁବନେଶ୍ୱର କୋଣାର୍କ ପ୍ରଭୃତି ତୀର୍ଥ ସ୍ଥାନମାନ ଭ୍ରମଣ କରି ସେହି ସବୁଠାରେ ରଚନା କରୁଥିଲେ । ପୁରୀକୁ ସେ ଦୁଇ ତିନି ଥର ଯାଇ ଥିବାର ଅନୁମାନ ହୁଏ । ବନପର୍ବଠି ଦ୍ରୋଣପ୍ରଭୃତି ପର୍ବରେ ନୀଳାଚଳର ଯେପରି ସବିସ୍ତାର ବର୍ଣ୍ଣନା ଏବଂ କବିଙ୍କର ପ୍ରତ୍ୟକ୍ଷ ଜଗନ୍ନାଥ ଦର୍ଶନର ଚିହ୍ନ ମିଳେ, ତାହା ଅନ୍ୟ କୌଣସି ପୂର୍ବ ରଚିତ ପର୍ବରେ ନାହିଁ । ଏଥିରୁ ସ୍ପଷ୍ଟ ଜଣା ଯାଉଅଛି କବି ସେଠା କଳ୍ପବଟ ମୂଳେ ବସି ମହାଭାରତ ରଚନା କରୁଥିଲେ । ନୀଳେନ୍ଦ୍ରୀ ଦଳପତ୍ରିଏ ଯା ବଦନ ଶୋଭି । ନୀଳ କଳ୍ପବଟ ତଳେ ପାଇଲି ତା ଭେଟି । ଉଃ ପଃ ପୃ ୧୭ । ସେଠାରେ ମୁକ୍ତି ମଣ୍ଡପର ବ୍ରାହ୍ମଣ ପଣ୍ଡିତମାନଙ୍କ ସହିତ ତାହାଙ୍କର ଆଳାପ ହେଲା । 'ପଣ୍ଡିତ ଜନମାନଙ୍କୁ ମୁଁ ମାଗଇଁ ବିନୟେ—କର ଆଜ୍ଞା ହେଉ ମୋର ନାରାୟଣ ଲୟେ । ମଃ ପଃ । ସେମାନଙ୍କ ସଂସର୍ଗରେ ମଧ୍ୟ ଦାସଙ୍କ ରୁଚିର ଯଥେଷ୍ଟ

ପରିବର୍ତ୍ତନ ଘଟିଥିଲା । ସମ୍ଭବତଃ ତତ୍‌କାଳୀନ ପଣ୍ଡିତମାନଙ୍କ ମୁଖରୁ ମହାଭାରତ କଥା ଶୁଣି ଓ ନୂତନ ଭାବରେ ଶୁଣି କୃତାର୍ଥ ହୋଇଥିଲେ । ତେଣୁ ଶ୍ରୀଦେବ ଲିଖିତ ସର୍ବମାନ ଭାଷା ଓ ବର୍ଣ୍ଣନରେ ଅପେକ୍ଷାକୃତ ଉତ୍କୃଷ୍ଟ ବୋଲି ବୋଧ ହୁଏ । ସେଥିରେ ଅଶ୍ଳୀଳତା ଓ ଗ୍ରାମ୍ୟଭାବର ମାତ୍ରା ଅତିଅଳ୍ପ ଲକ୍ଷିତ ହୁଏ ।

ଅନନ୍ତର କବି ଯଶୋବନ୍ତର ଲିଙ୍ଗଙ୍କ ମନ୍ଦିରରେ କିଛିଦିନ ଅବସ୍ଥାନ କରି ପ୍ରସିଦ୍ଧ କୋଣାର୍କତୀର୍ଥର ଅଭିମୁଖୀନ ହେଲେ । କୋଣାର୍କର ବିଶାଳଦେବୈକତସ୍ଥଳ ତାହାଙ୍କର ଅତିପ୍ରିୟ ଥିଲା । (୧) ସେହି ପୁଣ୍ୟସ୍ଥାନଲାଭ ଏବଂ ମହୋଦଧି ଦର୍ଶନରେ ଅବଶ୍ୟ ତାହାଙ୍କର ଭକ୍ତ୍ୟନ୍ତର ଜାତ ହୋଇଥିଲା ଏବଂ ସେହିଠାରେ ସେ ତପଶ୍ଚରଣ କରି ମହାଭାରତର ଅବଶିଷ୍ଟାଂଶ ପୂର୍ଣ୍ଣ କଲେ । ଅନ୍ୟତ୍ର ମଧ୍ୟ ସେ ଯେତେ କୋଣାର୍କର ପ୍ରଶଂସା ଏବଂ ସର୍ବଶ୍ରେଷ୍ଠତା ବର୍ଣ୍ଣନ କରି ଅଛନ୍ତି, ସେଥିରୁ ବୋଧହୁଏ ଯେପରି କି ସେହିଠାରେ ମୁକ୍ତିର ପନ୍ଥା ଉଦ୍‌ଘାଟିତ ହୋଇଥିଲା । ସମ୍ଭବତଃ ଏହିଠାରେ ସେ ଯୋଗସାଧନ ଆରମ୍ଭ କରିଥିଲେ । ସ୍ୱର୍ଗାରୋହଣପର୍ବର କେତେକ ପଂକ୍ତି ନିରୀକ୍ଷଣ କଲେ ତାଙ୍କର ଯୋଗାଭ୍ୟାସ ଥିବାର ଅନୁମାନ ହୁଏ । (୧) ସେଠାରେ ମଧ୍ୟ ଗୋଟିଏ

---

(୧) କାମକୁ ବିନାଶ ଦଶଦ୍ୱାରକୁ ନିରୋଧ । ବ୍ରହ୍ମେ ଲୟ ରଖ ଅଣହାଣ ବାହୁଡ଼ିନ୍ଥ । ଛିଥିଲା ପିଙ୍ଗଳା " ସିପୁନୁକା ଉନନାଡ଼ୀ । (ଟିଗଳା ସୁଷୁମ୍ନା) ନିରୋଧି ପବନକୁ ଯେ ଏକଦ୍ୱାରେ ଛାଡ଼ । ଘଣ୍ଟିକା ଲେଉଟାଇ ସ୍ୱଦ ଖେଚର ମୁଦ୍ରା, ତେବେ ବାହାରକୁ ଯେ ହୋଇବ ମହା ନିଦ୍ରା । ଏପରି ହୋଇଲେ କେବେ ନଲାଗିବ ଭେକ । ଭେକନରୋଧଣ ଶରୀରକୁ ସୃଷ୍ଟେ ରଖ । ଆହାର ଶୟନ ଯେବେ ହୁଥଇ ଉପେକ୍ଷା, ତେବେ ନିଶ୍ଚିନ୍ତରେ ଏ ଶରୀର ହୁଏ ରକ୍ଷା—ମୂଃ ପଃ ପୃ ୪ ।

କଳ୍ପବଟ ତାହାଙ୍କର ଅଧିଷ୍ଠିତସ୍ଥାନ । "ଚନ୍ଦ୍ରଭାଗା କୋଣାର୍କ ମହୋଦଧିତଟେ-ଭବଇଁ ସର୍ବଦା ମୁହିଁ ସେ ବଟ ନିକଟେ" (୨) ଶାଃ ପଃ ୨୪ପୃ । ସମଗ୍ର ମହାଭାରତ ପୂର୍ଣ୍ଣ ହେଲା ଉତ୍ତାରେ ସେ ପୁଣି ପୁରୀ ପ୍ରତ୍ୟାଗମନକରି ସୁପ୍ରସିଦ୍ଧ ମୁକ୍ତିମଣ୍ଡପ ସଭାର ପଣ୍ଡିତମଣ୍ଡଳୀଙ୍କ ସମ୍ମୁଖରେ ସ୍ୱୀୟନୂତନ ପ୍ରାକୃତ ମହାଭାରତ ଉପସ୍ଥାପିତ କଲେ । କଥିତ ଅଛି, ପଣ୍ଡିତମାନେ ଶୂଦ୍ର କବିକୃତ ଏହି ମହାଭାରତକୁ ସ୍ୱଭାବଗତ ଘୃଣା ଚକ୍ଷୁରେ ଦେଖି ଦେଖି ଗ୍ରନ୍ଥ ମଧ୍ୟରେ ନିତାନ୍ତ ଅସଙ୍ଗତ ଏବଂ ଅମୂଳକ ବର୍ଣ୍ଣନାମାନ ଦେଖି ଅତ୍ୟନ୍ତ ବିରକ୍ତ ହେଲେ, "ବିଶେଷତଃ ଗୋଟିଏ ସ୍ଥଳରେ" ହାତିବାର ଯୁଣ୍ଡାର ଘଣ୍ଟାବାର ଯୁଣ "ଏହି ଅସମ୍ଭବ କଥାଟି ଶୁଣି ଉକ୍ତ ଗ୍ରନ୍ଥ ପ୍ରତି ଅନାସ୍ଥା ପ୍ରଦର୍ଶନପୂର୍ବକ ଫିଙ୍ଗି ଦେଲେ ଏବଂ ଯଥେଷ୍ଟ ତିରସ୍କାର ଓ ଉପହାସ ସହ ବିଦାୟ ଦେଲେ । ଭକ୍ତ କବି ସେଥିରେ ନିତାନ୍ତ ମର୍ମାହତ ହୋଇ ସମସ୍ତ ରାତି ଜାଗରଣପୂର୍ବକ ଭକ୍ତ ପ୍ରିୟ ଜଗନ୍ନାଥଙ୍କର ଆରାଧନା କଲେ ଏବଂ ତାହାଙ୍କ ପ୍ରସାଦରୁ ତହିଁ ଅରଦିନ ଉକ୍ତ ଅଂଶର ସତ୍ୟତା ପ୍ରମାଣ କରାଇ ପଣ୍ଡିତମାନଙ୍କଦ୍ୱାରା ସ୍ୱମହାଭାରତକୁ ସଂଗତ ବୋଲି ଅନୁମୋଦିତ କରାଇଲେ । (୩) ତାଙ୍କର ଭକ୍ତିର ପରାକାଷ୍ଠା ପ୍ରଦର୍ଶନରେ ପଣ୍ଡିତମାନେ ଅତୀବ ସନ୍ତୁଷ୍ଟ ହୋଇ ତାହାଙ୍କୁ ଶୂଦ୍ରମୁନି ବୋଲି ଆଦର କଲେ । ବୋଧ

(୨) ପ୍ରତ୍ୟେକ ସ୍ଥଳରେ ବଟତଳର ଉଲ୍ଲେଖ ହାର ସେ ସନ୍ନ୍ୟାସିବେଶରେ ବୁଲୁଥିବାର ଅନୁମାନହୁଏ ଏବଂ ବଟତଳେ ତାହାଙ୍କର ସେହି ମୂର୍ତ୍ତିବେଶଟି ହଠାତ୍ ପାଠକର ମାନସ ପ୍ରତ୍ୟକ୍ଷ ହୁଏ ।

(୩) ହାତୀ ବାଇଦ୍ରୁଣ ତାର ଘଣ୍ଟା ବାଇଦ୍ରୁଣ ଏକଥାଟି ଲୋକେ ଏପର୍ଯ୍ୟନ୍ତ କହୁଅଛନ୍ତି । ଏହି କିଂବଦନ୍ତୀ ଘଟନା ସତ୍ୟ ପ୍ରାୟ ବୋଧହୁଏ । କବି ସେହି ଉକ୍ତିରେ ପଣ୍ଡିତମାନଙ୍କର ବିଶ୍ୱାସ କରାଇଥିଲେ ତାହା ଉଦ୍ଯୋଗ ପର୍ବ ଅନ୍ତର୍ଗତ ନିମ୍ନଲିଖିତ କବିତାରୁ ସ୍ପଷ୍ଟରୂପେ ଅନୁମିତ ହେଉଅଛି:—ହସ୍ତୀ ବାଇଦ୍ରୁଣ

ହୁଏ ଏହି ସମୟଠାରୁ ତାହାଙ୍କର ଶୂଦ୍ରମୁନି ଆଖ୍ୟା ସର୍ବତ୍ର ପ୍ରଚରିତ ହେବାକୁ ଲାଗିଲା । ସମ୍ଭବତଃ ଏହି ସମୟରେ ତଦାନୀନ୍ତନ ନରପତି କପିଳେନ୍ଦ୍ର ଦେବ ତାହାଙ୍କର ପରିଚୟ ପାଇଥିଲେ ଏବଂ କବି ମଧ୍ୟ ରାଜଦର୍ଶନ ଲାଭ କରି ଉପକୃତ ହୋଇଥିଲେ । ଗୁଣଗ୍ରାହୀ ରାଜା ଏହି କବିଙ୍କୁ ଶାରଳା ସେବକ ଥିବାର ଜାଣି ରାଜକୀୟ ଉପାଧି ସହିତ (୪) ଝଙ୍କଡ ଆଦି କେତେ ଖଣ୍ଡି ଜନପଦ ନିଷ୍କର ବୃତ୍ତି ପ୍ରଦାନ କରିଥିଲେ । ଗଙ୍ଗବଂଶୀୟ ରାଜଗଣଙ୍କ ରାଜତ୍ୱ କାଳରେ ପୁରୋହିତ ଓ ସେବକମାନେ ଯେତେ ନିଷ୍କର ବୃତ୍ତି ପ୍ରାପ୍ତ ହେଉଥିଲେ ଅନ୍ୟ କୌଣସି ରାଜାଙ୍କ ସମୟରେ ସେପରି ଘଟି ନାହିଁ ବୋଲି ଇତିହାସ ପ୍ରକାଶ କରୁଅଛି । କବି ରାଜପ୍ରସାଦ ଲାଭ କରି ସ୍ୱର୍ଗୋପମ ଜନ୍ମସ୍ଥାନ ପ୍ରତି ପୁଣି ଅଗ୍ରସର ହେଲେ । ପଥ

---

ତାର ଘଣ୍ଟା ବାଜୁଥିଲା, ଏମନ୍ତ ଶୁଣି ଯୁଧିଷ୍ଠିର ଆଶ୍ଚର୍ଯ୍ୟ ହୋଇଣ । ସହଦେବଙ୍କର ଶ୍ରୀମୁଖକୁ ଅନାଇଲେ । ମୋ ଆଗରେ ମିଥ୍ୟା ତୁ ଯେ କହିଲୁ ବୋଇଲେ । ସମର ଭୂମିରେ ଯେବେ ଥିବ ସେହି ହସ୍ତୀ ? କେଉଁଠାରେ ରହିବେ ସେ ଘଟନ ପଦାତି । ଅଛି ହସ୍ତୀ କଣ୍ଠେ ପୁଣି ଘଣ୍ଟା ବାଜୁଥିଲା, ଏକଥା ମାନ ମୋତେ ଲାଗଇ ଅଘଟଣ । ଯୁଧିଷ୍ଠିରଙ୍କ ବଚନେ କହନ୍ତି ସହଦେବ ଅସମ୍ଭବ ନୋହିଲ ଯେ ହସ୍ତୀର ପ୍ରସ୍ତାବ । ଏକମନେ ଶୁଣିମା ଏବେ ହେ ଦେବରାଏ । ମାନବରେ ଦେବଯୁଗ ଯାତଯୁଗ ହୁଏ । ଦେବତାଙ୍କୁ ବ୍ରହ୍ମଯୁଗ ଅଟେ ପୁଣ ଯାତେ । ଏକମନେ ବୁଝ ଏହା ହୋଇଲାକ କେତେ । ମାନବ ଯୁଗରେ ଘଣ୍ଟା ଅଛି ହସ୍ତୀ ଗଲା । ଦେବତା ଯୁଗରେ ପୁଣ ହସ୍ତୀ ଯେ ହୋଇଲା । ବ୍ରହ୍ମ ଯୁଗେ ହୋଇଅଛି ଯେ ସମର ଭୂମି- ସହଦେବ ବଚନେ ସନ୍ତୋଷ ଦେବ ସ୍ୱାମୀ । ଊଃ ପଃ ପୃ ୧୦୬ ।

ମହାଭାରତ ପାଠକମାନେ ଏହି ଗ୍ରନ୍ଥ ବର୍ଣ୍ଣିତ କାଳ ଓ ମାର୍ଗର ପରିମାଣ ଏବଂ ଶ୍ଳୋକ ସଂଖ୍ୟା ସ୍ଥଳରେ ଏହି ଯୁକ୍ତିର ପଦ ମନେ ରଖିବେ ତାହାହେଲେ ଅବା କଥଞ୍ଚିତ୍ ଧୈର୍ଯ୍ୟସହକାରେ ସମସ୍ତ ଗ୍ରନ୍ଥ ପଢିପାରିବେ ।

(୪) କଥିତ ଅଛି ତାଙ୍କର ପୂର୍ବ ଉପାଧି ସ୍ୱାଇଁ ଥିଲା, ରାଜା ପଣ୍ଡା ଉପାଧି ପ୍ରଦାନ କରିଥିଲେ ।

ମଧ୍ୟରେ ଭୁବନେଶ୍ୱର ପ୍ରାଚୀକୂଳସ୍ଥ ତ୍ରିବେଣୀ ତୀର୍ଥ (୧) ନଖ-ହର (ଫୁଲ ନଖର) ପ୍ରଭୃତି ସ୍ଥାନ ଅତିକ୍ରମ କରି କଟକରେ (୨) ଆସି ଉପସ୍ଥିତ ହେଲେ । ସେଠାରେ ପ୍ରଥମେ ଚଣ୍ଡୀ ଦର୍ଶନ ପୂର୍ବକ (୩) ତୁଳସୀପୁରଠାରେ କିଛୁକାଳ ଅବସ୍ଥାନ କରି ସ୍ୱର୍ଗଦ୍ୱାରାଭିମୁଖରେ ପ୍ରସ୍ଥାନ କଲେ । ତେତେବେଳେ କଟକ-ବାସୀମାନଙ୍କର ଅବସ୍ଥା ଯିତିମାତ୍ର ଅଦ୍ୟ କପରି ଥିଲା କେଜାଣି, କିନ୍ତୁ କବି କଟକ ପ୍ରତି ବଡ଼ ତୀବ୍ର କଟାକ୍ଷପାତ କରିଅଛନ୍ତି । ଆଜି କାଲି ଯେପରି କଥାରେ କହନ୍ତି "କଟକରେ ଜାତି ନାହିଁ କି ପୁରୀରେ ଛୁତ ନାହିଁ" ବହୁ ଶତବର୍ଷ ପୂର୍ବରୁ କବି ସେହିପରି ପ୍ରକାଶ କରିଅଛନ୍ତି—"ଅମୋକ୍ଷ ଏ ଭୂମି ଜାଣି କେହି ନ ପଶିଲେ, ମାନ୍ୟ ଗଉରବ ନାହିଁ ସବୁ ଏକାକାର । ଦ୍ୱିଜ ଚଣ୍ଡାଳ ଯେ ଏକ ନୁହନ୍ତି ଅନ୍ତର । ଭୋଜନ କରିଲେ ଦ୍ୱିଜ ନୁହଇ ଅଇଁଠା । ମଦ୍ୟ ମାଂସ ଏକଏରେ କରନ୍ତି ଯେ ଲଟା । ଅନୁ-କ୍ଷଣେ ଏଠାବାସୀ ରମଣ କରନ୍ତି—କେଉଁଥିରେ ସେମାନଙ୍କ ନ ଥାଇ ଯେ ଭ୍ରାନ୍ତି । ଗୋ ବ୍ରାହ୍ମଣ ମାରନ୍ତି ସେ ନ ଜାଣନ୍ତି ହତ୍ୟା । ନ ଜାଣନ୍ତି ତହିଁ ଦେବ ହରି ହର କଥା ।"—ସ୍ୱଃ ପଃ ୧୯ ପୃଷ୍ଠା । ବର୍ତ୍ତମାନେ ଏହି ପଂକ୍ତି କଥପସ୍ଥର ଭାବ ପୂର୍ବୋକ୍ତ ପ୍ରବାଦ ଆକାର ଧାରଣ କରିଅଛି । ଶେଷ ପର୍ବର

(୧) ସେହଠାରୁ ଚଳିଗଲେ ଅଗ୍ନିକୋଣ ମୂର୍ତ୍ତି-ପ୍ରାଚୀ ନଦୀ କୂଳେ ଯାଇ ପ୍ରବେଶ ହୁଅନ୍ତି । ସ୍ୱଃ ପଃ ପୃ ୧୪ ।

(୨) ତୁଳସୀପୁର ନଗରେ ଯାଇ ପ୍ରବେଶିଲେ । ଦେଖିଲେ ସେ କୋଠସଏ ରୁଦ୍ରା ନଦୀ ତୀରେ । ସ୍ୱଃ ପଃ ପୃ ୧୮ (କାଠଯୋଡ଼ିକ ?) ।

କାଠଯୋଡ଼ି ନାମଟି ଅତି ଅଳ୍ପକାଳ ହେଲା ହୋଇଅଛି । ବୋଧହୁଏ ତାହାର ପୂର୍ବନାମ ରୁଦ୍ରାଥିଲା ।

(୩) କହୁଛି ଚଣ୍ଡୀ ଶ୍ରୀ ଗୋ ମଣ୍ଡିତ ବଟମାଳ । ତବପାଦପଦେ ଲମ୍ବି କରେ ନମସ୍କର । ସ୍ୱଃ ପଃ ପୃ ୧୮ ।

ଏହି ଅଂଶ ଯଦି ପ୍ରକ୍ଷିପ୍ତ ନ ହୋଇ ଥାଏ, ତାହା ହେଲେ ଏଥିରୁ ସ୍ପଷ୍ଟ ପ୍ରତିପନ୍ନ କରା ଯାଇ ପାରେ ଯେ, କଟକ ସେତେବେଳେ ରାଜଧାନୀ ନ ଥିବାରୁ ଏବଂ ରାଜଧାନୀ ତହିଁର ବହୁ ଦୂରରେ ଅବସ୍ଥିତ ଥିବାରୁ ତଦେତ୍ୟ ପ୍ରଜାଗଣଙ୍କ ମଧ୍ୟରେ ନ୍ୟାଯ୍ୟଧର୍ମର ବିଚାର ହେଉ ନ ଥିଲା ଲୋକେ ନାନା ଅତ୍ୟାଚାରର ପ୍ରଶ୍ରୟ ପାଉଥିଲେ ! ଏହା ମଧ୍ୟ ଅନୁମିତ ହେଉଅଛି ; ସେତେବେଳେ ଯବନଅଧିକାରର ଉପକ୍ରମ ହୋଇଥିଲା । ଭକ୍ତ କବି ଧର୍ମକ୍ଷେତ୍ର ପୁରୀ ଓ ଭୁବନେଶ୍ୱର ଦେଖି ଆସି ପଛେ ପଛେ ଏ କଟକକୁ ଯେ ଅପବାଦ ମଣିବେ, ସେଥିରେ ସନ୍ଦେହ କଣ ? କଟକ ନଗରରେ ଅବସ୍ଥାନ କରିବା ଦୂରେ ଥାଉ ତାହା ଭିତରକୁ ସୁଦ୍ଧା ସେ ପ୍ରବେଶ କରୁ ନ ଥିଲେ । ନଗର ମଧ୍ୟରେ ନ ଯାଇ ତୁଳସୀପୁରକୁ କିପରି ଗଲେ ବୋଲି ଅନେକେ ସନ୍ଦେହ କରି ପାରନ୍ତି ; ମାତ୍ର ସହରର ଆକାର ଓ ଅବସ୍ଥିତି ଆଜିକାଲି ପରି ନ ଥିଲା । ସମ୍ଭବତଃ ସେ ସମୟରେ ଯାତ୍ରୀମାନେ ବରାଣସି (ବାରନାଶୀ) ବାଟେ ତୁଳସୀପୁର ଆଡକୁ ଯାଉଥିଲେ । କବି ତୁଳସୀପୁର ପ୍ରଭୃତି ଭ୍ରମଣ କରି ପରିଶେଷରେ ସ୍ୱଜନ୍ମଭୂମିରେ ଉପସ୍ଥିତ ହୋଇ ଜୀବନର ଅବଶିଷ୍ଟାଂଶ ଯାପନ କଲେ ।

ଅତି ପ୍ରାଚୀନ କାଳରେ ଏହି ଦେଶରେ ଓଡ୍ରମାନଙ୍କର ଅଧିବାସ ଥିଲା (୧) ମହାଭାରତ ଏବଂ ଅନ୍ୟାନ୍ୟ ପୁରାଣ

---

*—୧ ମହାଭାରତରେ ସଭାପର୍ବରେ ସହଦେବ ଓଡ୍ର ମାନଙ୍କୁ ଜୟ କରି ଥିବାର ଉଲ୍ଲେଖ ଅଛି । ପାଣ୍ଡ୍ୟାଂଶ୍ଚ ଦ୍ରାବିଡାଂଶ୍ଚୈବ ସହିତାଂ ଶ୍ଚୋଡ୍ରକେରଳୈଃ । ସଃ ପଃ ଅ ୩୧ । ୭୧ । ଓଡ୍ରବଙ୍ଗ ପାଣ୍ଡବଙ୍କୁ ହସ୍ତି ଦନ୍ତ ଉପହାର ଦେଇ ଥିଲେ । ଉତ୍କଳ ଯେ ହସ୍ତିବହୁଳଦେଶ ଥିଲା, ତାହା ଏଥିରୁ ଏବଂ "ସ ତୀର୍ଣ୍ଣ୍ୱା କପିଶାଂ ସୈନ୍ୟୈର୍ବଦ୍ଧ ଦ୍ୱିରଦ ସେତୁଭିଃ" ରଘୁବଂଶର ଏହି ପଂକ୍ତିରୁ ସୂଚିତ ହେଉଅଛି ।

ନନ୍ଦ୍ଧାନ ।

ଗ୍ରନ୍ଥରେ ମଧ୍ୟ ଓଡ୍ର ନାମର ଉଲ୍ଲେଖ ଦେଖା ଯାଏ । ଓଡ୍ରା ଉତ୍କଳନାମାନଃ - ତ୍ରିକାଣ୍ଡ-ଶେଷ, ଉତ୍କଳାଦର୍ଶିତଃପଥଃ-ରଘୁବଂଶ, ଏହି ଦୁଇଟି ପଂକ୍ତିରୁ ସ୍ପଷ୍ଟ ବୁଝା ଯାଉଅଛି ଯେ, ଏଦେଶବାସୀମାନେ ଓଡ୍ର ଓ ଉତ୍କଳ ଉଭୟ ନାମରେ ଅଭିହିତ ହେଉଥିଲେ । ଉତ୍କଳନାମ ଏ ଦେଶର ପ୍ରାଚୀନ ହେଲେହେଁ ବିଶେଷରେ ଓଡ୍ରମାନଙ୍କର ବାସ ହେତୁରୁ ପଶ୍ଚାତ୍ ଏହାର ନାମ 'ଓଡ୍ରଦେଶ' ହେଲା । 'ଓଡ୍ରଦେଶ'ରୁ ସମ୍ଭବତଃ 'ଓଡ଼ିଶା' ନାମଟି ଆସିଅଛି । କବିଙ୍କର ମହାଭାରତରେ ଓଡରାଷ୍ଟ୍ର ନାମଟିର ବହୁଳ ଉଲ୍ଲେଖ ଦେଖି ମଧ୍ୟ ଏହା ଅନୁମାନ ହୁଏ, ଯେ କାଳରେ ଅନେକେ ଏ ଦେଶକୁ ଓଡଦେଶ ବା ଓଡରାଷ୍ଟ୍ର ବୋଲି କହୁଥିଲେ । ହୁଏତ ସେହି ବୀରଯୁଗରେ ବୀର ପୁରୁଷମାନେ ଯୁଦ୍ଧ ପ୍ରବର୍ତ୍ତନା ବା ସୈନ୍ୟାଦିର ଉତ୍ତେଜନା କାଳରେ ବାଚ୍ଛେଚିତ ଭାଷାରେ ସ୍ୱଦେଶର ଓଜସ୍ୱୀ 'ଓଡରାଷ୍ଟ୍ର' ନାମଟି ଉଚ୍ଚାରଣ କରିବାକୁ ସ୍ୱତଃ ପ୍ରବୃତ୍ତ ହେଉଥିଲେ । କବିଙ୍କ କଳ୍ପନାରୁ ଏହି ନାମର ଅତି ଅପୂର୍ବ ବ୍ୟାଖ୍ୟା ମଧ୍ୟ ବାହାରି ଅଛି । "ସସାଗରା ପୃଥିବୀ ସେ ନବଭାଗ କଲେ । ନବଖଣ୍ଡ ମେଦିନୀ ନବ ପୁତ୍ରଙ୍କୁ ଦେଲେ । ରାଜାର ଜ୍ୟେଷ୍ଠ ପୁତ୍ର ନାମ ଗୁରୁ ନୃପତି । ଓଡ଼ିଣୀ ଭାରିଯା ତାର ଅଟଇ ସମ୍ପତ୍ତି । ମାତାଙ୍କର ଭାବେ ଯେ ଓଡ଼ରାଷ୍ଟ୍ର ମନ୍ତ୍ରିଲେ, ତେଣୁ ଓଡ଼ିଶାକୁ ଓଡ଼ରାଷ୍ଟ୍ର ଯେ ବୋଇଲେ । ଆଃ ପ । ଶେଷୋକ୍ତ

---

୧ କପିଳ ସଂହିତାରେ—ଉତ୍ତ୍ରଦେଶ ଇତଖ୍ୟାତୋ ଦେଶୋ ଭାରତ ସଂଜ୍ଞକଃ । ଅ ୭ମ, ଉତ୍କଳେତୁ ସଦା ସନ୍ତି କୃଷ୍ଣାର୍କ ପାର୍ବତୀହରାଃ । ଉତ୍କଳେ ଦେଶ ଦ୍ୱିଜଶ୍ରେଷ୍ଠ-ନଦୀନାମୁତ୍ତମା ନଦୀ । ମହାନଦୀତିବିଖ୍ୟାତା ସର୍ବପାପପ୍ରଣୋଦନୀ । ଅ ୨ ୟ

ପଂକ୍ତିରୁ ସ୍ପଷ୍ଟ ଅନୁମିତ ହେଉଅଛି ଯେ, ଓଡ଼ିଶାର ପଶ୍ଚାତ୍ ଓଡ୍ରରାଷ୍ଟ୍ର ନାମର ସୃଷ୍ଟି । ସେ ଯାହାହେଉ ଏହି ଓଡ଼ିଶା ସର୍ବ-ପ୍ରଥମେ ଓଡ୍ର ବା ଶୂଦ୍ରମାନଙ୍କର ବାସଭୂମି ଥିଲା । ସେମାନେ ନାନା ଶାଖାରେ ବିଭକ୍ତ ଥିଲେ । ବିଭିନ୍ନଶାଖାର ଆଚାର ବ୍ୟବହାର ସାମାଜିକ ନିୟମାଦିରେ କିଞ୍ଚିତ୍ ପାର୍ଥକ୍ୟ ରହିଥିଲା । କୃଷି (ବିଶେଷତଃ ଆଖୁକୃଷି) ଓ ଗୋଚାରଣ ସେମାନଙ୍କର ସାଧାରଣ ବ୍ୟବସାୟ ହେଲେହେଁ, କୌଣସି ୨ ସମ୍ପ୍ରଦାୟ ତାହାକୁ ନିକୃଷ୍ଟ ବୃତ୍ତି ବୋଲି ମନେ କରୁଥିଲେ । ସୁବିଖ୍ୟାତ ଭାରତୀୟ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ରାଜେନ୍ଦ୍ର ଲାଲ ମିତ୍ର ପ୍ରକାଶ କରିଅଛନ୍ତି ଯେ, ଏହି ଶୂଦ୍ରମାନେ ଉତ୍କଳର ସର୍ବ ଅଞ୍ଚଳରେ ପରିବ୍ୟାପ୍ତ ହୋଇଥିଲେ ଏବଂ ସମସ୍ତେ ଏକା ବ୍ୟବସାୟ କରୁ ନ ଥିଲେ । (୧) ବ୍ରାହ୍ମଣୀ ନଦୀର ଦକ୍ଷିଣଦେଶବର୍ତ୍ତୀ ଶୂଦ୍ରମାନେ ଅଖୁକୃଷି ପ୍ରବୃତ୍ତି କଲେ ଜାତି ଯିବ ବୋଲି ଭାବୁଥିଲେ । ଟିକିଏ ଭିତରକୁ ପ୍ରବେଶ କଲେ ଅମ୍ଭେ-ମାନେ ଏହାର ସତ୍ୟ ପ୍ରତ୍ୟକ୍ଷ କରି ପାରିବୁଁ । ଶୂଦ୍ରମାନେ ଏ ଦେଶର ବହୁ ପୂର୍ବକାଳର ଅଧିବାସୀ, ବୁଦ୍ଧିମାନ୍ ଏବଂ ଶାରୀ-ରିକ ଶକ୍ତିସମ୍ପନ୍ନ । ସେମାନେ ଅତ୍ମୋନ୍ନତି ବିଧାନରେ ପ୍ରଯତ୍ନ-ଶୀଳ ହୋଇ ଉନ୍ନତ ଅଦର୍ଶ ଅନୁକରଣରେ ନିଜ ଜାତିର ପ୍ରାଧାନ୍ୟ ସ୍ଥାପନରେ ପ୍ରୟାସୀ ହେଉଥିବେ । ବର୍ତ୍ତମାନ ସୁଦ୍ଧା

---

(୧) These ods cultivate sugar-cane, and carry burthens on bullocks, which no other uriyas, particularly those living south of Brahmani river, can do without losing their caste. "Antiquities of Orissa Vol II. P4.

ଅମ୍ଭେମାନେ ଏହି ଶୂଦ୍ରବଂଶଧର 'ଶୂଦ' ଅଖ୍ୟାଧାରୀମାନଙ୍କ ଠାରେ ଏହି ଚେଷ୍ଟା ଦେଖୁଅଛୁଁ । ବର୍ତ୍ତମାନ ଓଡ଼ିଶାର ସ୍ଥଳବିଶେଷରେ ଯେଉଁ ଅଳ୍ପସଂଖ୍ୟକ 'ଶୁଦ' ଅଛନ୍ତି, ସେମାନଙ୍କ ଆଚାର ବ୍ୟବହାରାଦି କରଣଙ୍କ ଆଚାରଠାରୁ କିଞ୍ଚିତ୍ ନିକୃଷ୍ଟ ହେଲେହେଁ, ଶୂଦ୍ରଚଷାମାନଙ୍କ ଅପେକ୍ଷା ବହୁଗୁଣରେ ଉତ୍କୃଷ୍ଟ । ତଥାପି ସେମାନେ ଧନକୁଦନ ତହିଁର ଅନୁର ସଂସ୍କାର (୧) କରିବାକୁ ଚେଷ୍ଟା କରୁଅଛନ୍ତି । ଏହି ଶୂଦ୍ର-

---

(୧) ବର୍ତ୍ତମାନେ ଏହି ଶୂଦ୍ର ବା ଶୁଦ ଅଖ୍ୟାଧାରୀଙ୍କର ସଂଖ୍ୟା ଓଡ଼ିଶାରେ ଅତି ଅଳ୍ପ ; ବାଲେଶ୍ୱର ଜିଲ୍ଲାରେ ଶୂନ୍ୟ କହିଲେ ଚଳେ । ୧୮୭୧ ଖ୍ରୀଷ୍ଟାବ୍ଦର ଲୋକ ସଂଖ୍ୟା ଅନୁସାରେ କଟକ ଜିଲ୍ଲାରେ ଶୁଦଙ୍କର ସଂଖ୍ୟା ୨୮,୨୭୬, ବାଲେଶ୍ୱରରେ ୪ଜଣମାତ୍ର । (Sudras or sudas agricultur-ist 28,276 in number P74. Sudas 4 in number P. 275 Hunter's statistical accounts of Bengal Vol.XVIII) ପୁରୀ ଜିଲ୍ଲାରେ ବିଶେଷତଃ କାକଟପୁର ଏବଂ ଖୋର୍ଦ୍ଧା ଅଞ୍ଚଳରେ ଏ ମାନଙ୍କର ବସତିଅଛି । ଶୁଦମାନଙ୍କର ସ୍ତ୍ରୀମାନେ ଚଷାଙ୍କ ସ୍ତ୍ରୀପରି ପିତ୍ତଳ ଖଡ଼ୁ ପିନ୍ଧନ୍ତି ନାହିଁ । କାଚ ପିନ୍ଧିବାରେ ସେମାନଙ୍କର ଅଭିରୁଚି । ଖୋର୍ଦ୍ଧାର ଓଡ଼ଚଷାମାନେ ଶୁଦମାନଙ୍କ ଅପେକ୍ଷା ନିକୃଷ୍ଟ ଏବଂ ସେମାନଙ୍କ ସାମାଜିକ ପ୍ରଥା ଓ ଆଚାର ବ୍ୟବହାରାଦିରେ ଅନେକ ପାର୍ଥକ୍ୟ ଅଛି । ଅମ୍ଭେମାନେ ଏହି ଓଡ଼ଚଷାଙ୍କୁ ଏକ କଥାରେ ଅଧମ ଓଡ୍ରମାନଙ୍କର ବଂଶଧର କହିଦେଇ ନିଶ୍ଚିନ୍ତ ରହୁଁ, ମାତ୍ର ଏହା କିପରି ସଙ୍ଗତ ହେବ? ଯେଉଁମାନେ ଏକ ସମୟରେ ସମଗ୍ର ଉତ୍କଳ ବ୍ୟାପୀ ଥିଲେ, ସେମାନଙ୍କର ଏହି କେତେକ ଜଣ କେବଳ ବଂଶଧର ? ଆଉ ସବୁ କାହିଁ ଗଲେ ? ଏଥିପୂର୍ବେ ଲେଖା ଯାଇଅଛି ଯେ, ଏହି ଶୂଦ୍ରମାନେ ନାନା ଶାଖାରେ ବିଭକ୍ତ ହୋଇ ବିଭିନ୍ନ ବ୍ୟବସାୟ ଅବଲମ୍ବନ କରିଥିଲେ । ସେହି ଶାଖା ପ୍ରଶାଖାରୁ ଗଉଡ଼, ଗୁଡ଼ିଆ ଗୋଲା ଥୋରିଆ ତେଲି ତାମ୍ବୁଲୀ ପ୍ରଭୃତି ଶୂଦ୍ରଜାତିର ସୃଷ୍ଟି ହୋଇଅଛି । ଶ୍ରୀଯୁକ୍ତ ହଣ୍ଟର ସାହେବ ଏମାନଙ୍କୁ ସତ୍‌ଶୂଦ୍ର (Respectable sudra castes) ବୋଲି ନିର୍ଦ୍ଦେଶ କରିଅଛନ୍ତି । ତନ୍ମଧ୍ୟରେ ଯେଉଁମାନେ ବ୍ୟବସାୟୀ ଏବଂ ବୃତ୍ତିମାନ୍ ସେମାନେ ସ୍ୱବ୍ୟବସାୟାନୁଯାୟୀ ନାମ ଲାଭ କରି ସମାଜ ମଧ୍ୟରେ

ମାନଙ୍କ ମଧ୍ୟରୁ ଯେଉଁମାନେ କ୍ରିୟା ଦ୍ୱାରା ନିଜର ଶ୍ରେଷ୍ଠତା ପ୍ରଖ୍ୟାପନ କରିଥିଲେ ସେହିମାନେ କୌଶଳକ୍ରମେ ଉପରକୁ ଉଠି କରଣସମ୍ପ୍ରଦାୟଭୁକ୍ତ ହେଉଅଛନ୍ତି। ବ୍ରାହ୍ମଣୀ ନଦୀର ଦକ୍ଷିଣ ଜନପଦବାସୀ (ଭୃଗୁଜନଦୀ ଦକ୍ଷିଣ କୂଳେ ଅଃ ପଃ) ପୂର୍ବୋକ୍ତ ସତ୍‌ଶୂଦ୍ର ଶାଖା ମଧ୍ୟରେ ଅସ୍ମମାନଙ୍କର କବି 'ଶାରଳା ଦାସ' ଜଣେ। ତାହାଙ୍କର ଉପାଧି ପରିଡ଼ା କେହି କେହି କହନ୍ତି ପରିଡ଼ା ରାଜଦତ୍ତ ଉପାଧି । ପୂର୍ବେ

---

ନୂତନ ହୋଇ ପରିଗଣିତ ହେଲେ। ଯେଉଁମାନେ ନିର୍ବୋଧ ଏବଂ ବ୍ୟବସାୟ ବର୍ଜିତ ସେହିମାନେ କେବଳ ପୈତୃକସତ୍ୱ ଶୂଦ୍ର ବା ଶୁଦ ନାମ ଛଡା ଅଉ କିଛି ପାଇଲେ ନାହିଁ। ତେଣୁ ଶୂଦ୍ର ସମାଜର ଏହି ହୀନ ଶାଖା ବର୍ତ୍ତମାନ ଓଡ଼ଚଷା ବୋଲି ଦୂଷିତ ହେଉଅଛନ୍ତି। "ଓଡ଼ ଶବ୍ଦ ବର୍ତ୍ତମାନ ଓଡିଶାରେ ଏକ ଘୃଣ୍ୟ ବା ତିରସ୍କାରବାଚକ ଶବ୍ଦ ହୋଇ ପଡ଼ିଅଛି', ଓ, ଇଃ ପୃଃ ୨୦। ଏହି ଓଡ୍ରମାନଙ୍କ ବାସସ୍ଥାନର ପରିମାଣ ପୂର୍ବେ ୧୧୨୦ ମାଇଲ ଥିଲା। ପ୍ରସିଦ୍ଧ ପରି-ବ୍ରାଜକ ହୁଏନ୍‌ତ୍‌ସାଂ ପ୍ରକାଶ କରିଅଛନ୍ତି। ସ୍ୱର୍ଗୀୟ ପ୍ୟାରିମୋହନ ଆଚାର୍ଯ୍ୟ ବିଭିନ୍ନ ଐତିହାସିକମାନଙ୍କର ମତ ସଙ୍କଳନପୂର୍ବକ ତତ୍ସମ୍ବନ୍ଧରେ ଏହା ଲେଖି-ଅଛନ୍ତି;—"ପୁରୀ ଜିଲ୍ଲାରେ (ବିଶେଷତଃ ଖୋର୍ଦ୍ଧାରେ) ଓଡ଼ଙ୍କ ସଂଖ୍ୟା ୮୨ ସହସ୍ରରୁ ଅଧିକ; ଗଡ଼ଜାତରେ ସାଢ଼େ ତିନି ସହସ୍ର, ବାଲେଶ୍ୱରରେ ଶୂନ୍ୟ ଏବଂ କଟକରେ ୨୦ ଜଣ ବୋଲି ବଙ୍ଗ ଲୋକସଂଖ୍ୟା ବିବରଣୀରେ ଲିଖିତ ଅଛି। ମାତ୍ର କଟକରେ ପ୍ରକୃତ ଓଡ଼ଙ୍କ ସଂଖ୍ୟା ଏତଦପେକ୍ଷା ଅଧିକ ଏବଂ ସେମାନେ ପ୍ରାୟ ବେଣାଟିଆ ଓଡ଼ଙ୍କ ଶ୍ରେଣୀଭୁକ୍ତ। କୌଶଳକ୍ରମେ ସେମାନେ ହିନ୍ଦୁସମାଜର ଗଉଡ଼ ଭଣ୍ଡାରୀ ଓ ଅନ୍ୟାନ୍ୟ ନିକୃଷ୍ଟ ଜାତିଙ୍କ ଉପରେ ପ୍ରଭାବ ଚଳାଇ ଓ ହିନ୍ଦୁଙ୍କ ସହବାସରେ ସ୍ୱ ସ୍ୱ ଆଚାର ନୀତିରେ କେତେକ ପରିବର୍ତ୍ତନ ଘଟାଇ, ଖଣ୍ଡାୟତ (ସମ୍ଭବତଃ ଶୂଦ୍ର ଚଷାଙ୍କ ସଙ୍ଗେ) ବନ୍ଧୁତା କରି, ଆପଣାକୁ ବଡ ଜାତି ବୋଲି ମଣନ୍ତି ଏବଂ ପେଣ୍ଡା କଳସା, ଦହିକଳସା ଓ ଶୁକର ଲଣ୍ଡା ବୋଲି ଯେଉଁ ଅନ୍ୟ ତିନିଜାତିୟ ଓଡ଼ ଅଛନ୍ତି ସେମାନଙ୍କୁ ଅସ୍ପୃଶ୍ୟ ଜ୍ଞାନ କରନ୍ତି। ଏମାନେ କି ଶୂଦ୍ର ଚଷାଙ୍କୁ ସେମାନଙ୍କ ହାଳିକ ହୀନ ବୋଲି କହନ୍ତି। ହୁଏତ ଲୋକସଂଖ୍ୟାର ଗଣନାକାରମାନେ ତାଙ୍କୁ ସାଧାରଣ ଶୂଦ୍ରଚଷା ଶ୍ରେଣୀରେ ଭୁକ୍ତ କରିଅଛନ୍ତି। ଖୋର୍ଦ୍ଧାର ଓଡ଼ମାନେ ବିଶେଷରୂପେ

ତାଙ୍କର ସ୍ୱାଇଁ ସଙ୍ଖ୍ୟା ଥିଲା । ବର୍ତ୍ତମାନ ଉତ୍କଳରେ ପରିଡ଼ା ଆଖ୍ୟାଧାରୀଙ୍କର ସଂଖ୍ୟା ଅଛିଅଳ୍ପ । ବାଲେଶ୍ୱର ଜିଲ୍ଲାରେ ଏ- ମାନଙ୍କର ସଂଖ୍ୟା ଅତି ଅଳ୍ପ । ବାଲେଶ୍ୱର ଜିଲ୍ଲାରେ ଏମାନ- ଙ୍କର ସଂଖ୍ୟା ୧୨ ଥିବାର ଲୋକସଂଖ୍ୟା ବିବରଣୀରେ (୧) ପ୍ରକାଶିତ । ଏହି ପରିଡ଼ାମାନେ ଅବଶ୍ୟ କରଣମାନଙ୍କଠାରୁ ନିକୃଷ୍ଟ । (୨) କୃଷି ତାଙ୍କର ଜାତୀୟ ବ୍ୟବସାୟ । କବିଙ୍କର ପୂର୍ବ ନାମ 'ସିଦ୍ଧେଶ୍ୱର' ଥିଲା ବୋଲି କିଂବଦନ୍ତୀରୁ ପ୍ରକାଶ ପାଏ । ତାହାହେଲେ ପୂର୍ଣ୍ଣନାମ, 'ସିଦ୍ଧେଶ୍ୱର ପରିଡ଼ା' (୩) । ଜାତିରେ ଶୂଦ୍ର, ସେସମୟରେ ଏହି ଜାତୀୟ କୃଷକ ସମସ୍ତେ ଶୂଦ୍ର ନାମରେ ଅଭିହିତ ହେଉଥିଲେ । "ସେ ଅନନ୍ତା ଶୂଦ୍ର—" ପ୍ରଭୃତି ପଂକ୍ତିରେ କବି ମଧ୍ୟ ଜାତି ପରିବର୍ତ୍ତରେ ଶୂଦ୍ର ନାମ ବ୍ୟବହାର କରିଅଛନ୍ତି । ସେ ଯାହା ଥାଉ କବି ସ୍ୱ- ଗ୍ରନ୍ଥରେ ନିଜ ବଂଶର ପରିଚୟ କେଉଁଠି ଦେଇ ନାହାନ୍ତି । ସେ ଗ୍ରନ୍ଥ ପାଠରୁ କେବଳ ଏତିକି ଜଣାଯାଏ ଯେ, ଚନ୍ଦ୍ରଭାଗା ନଦୀର (କନକପୁର ପାର୍ଶ୍ୱବାହିନୀ କ୍ଷୁଦ୍ରନଦୀ) ଘାଟିଆଳ ପରଶୁ- ରାମ ତାହାଙ୍କର ଅଗ୍ରଜ ଥିଲେ । ଏହି ପରଶୁରାମ * କନ୍ଥକା-

---

ଓଡ଼ ବୋଲି ନିର୍ଦ୍ଦିଷ୍ଟ ଏବଂ ସେମାନଙ୍କ ମଧ୍ୟରେ ଗୃହ ଜାତିର ପରସ୍ପର ଦେବା ନେବା, ଖିଆ ପିଆ, କୌଣସି ବିଷୟରେ କିଛି ଭୁସସ୍ଥାନ ନାହିଁ । ଏମାନଙ୍କ ହସ୍ତର ପାଣି ଅସ୍ପୃଶ୍ୟ । ହିନ୍ଦୁକପରି ଶବଦାହର ବିଶେଷ ବିଧି ନାହିଁ ।" ଓଡ଼ିଶା ଇତିହାସ, ପୃ ୨୦ ।

(୧) Paridas 12 in number in Balasore, P. 275 S. A. B, Vol. XVIII.

(୨) ଏହି ଜାତିର ସମ୍ପ୍ରଦାୟ ବର୍ତ୍ତମାନ କରଣ ଶ୍ରେଣୀଭୁକ୍ତ ହୋଇ ପରିଡ଼ା ନାମ ପରିବର୍ତ୍ତିରେ 'ପଟ୍ଟନାୟକ' କରୁଅଛନ୍ତି ।

(୩) କେହି କେହି ପୂର୍ବ ନାମ ଶାରଳ ସ୍ୱାଇଁ ବୋଲି କହନ୍ତି ।

* ଅନେକେ ଏହି ପରଶୁରାମଙ୍କୁ ଜାମଦଗ୍ନ୍ୟ ପରଶୁରାମ ବୋଲି ଜାଣନ୍ତି । ଏପରି ବିଶ୍ୱାସର କାରଣ ଜାମଦଗ୍ନ୍ୟ ଶାରଳା ମୂର୍ତ୍ତିର ପ୍ରତିଷ୍ଠା କରିଥିଲେ ବୋଲି କିଂବଦନ୍ତୀ ଅଛି ।

ବଗ ପାଟଣା (ଅଧୁନିକ କନକପୁର) ବସାଇଥିଲେ । ଏହି ଗ୍ରାମ କଟକରୁ ତାଳଦଣ୍ଡା କାଳ ବାଟେ ପ୍ରାୟ ୧୫ କ୍ରୋଶ ପୂର୍ବରେ ଅବସ୍ଥିତ । ତାହାର ଉତ୍ତର ପଶ୍ଚିମବର୍ତ୍ତୀ ଶାରଳ ନାମକ ଗ୍ରାମ (ଅଧୁନିକ ନାମ ବଡ଼ ଶାବୋଲ) କବିଙ୍କର ଅଦ ବାସସ୍ଥାନ ଥିଲା । ଅଧୁନା ମଧ୍ୟ କବିଙ୍କର ପରମାରାଧ୍ୟା ଶାରଳା ଦେବୀଙ୍କର ମନ୍ଦିର ପ୍ରଥମେ ଏହି ଗ୍ରାମରେ ଥିଲା । ମହା-ଭାରତର ନିମ୍ନୋଦ୍ଧୃତ କତିପୟ ପଂକ୍ତିରୁ ଏ ସବୁର ପ୍ରମାଣ ମିଳୁଅଛି ।

ନୀଳସୁନ୍ଦର ଗିରି ଉତ୍ତର ଦିଗ କୋଣେ ।
ସାରସ୍ୱତ ଭୂମି ଭରତଖଣ୍ଡ ଅଇଶାନ୍ୟେ । (ଓଡ଼ିଶା) —
ଚନ୍ଦ୍ରଭାଗା ବୋଲିକରି ନଦୀ ଏକ ଗୋଟି ।
ବୃଦ୍ଧ ମାତାଙ୍କ ପାରୁଟେଶ ମହୋଦଧି ଭେଟି ।
ସେ ନଦୀ ତଟରେ ପର୍ଶୁରାମ ଯେ ଯାଚଇ ।
କନକାବତୀ ନାମେ ପାଟଣା ପ୍ରକାଶଇ ।
ତା ଉତ୍ତରେ ଅନୁଜ ଶାରଳ ବୋଲ ଗ୍ରାମେ ।
ବିଜୟେ ମାହେଶ୍ୱରୀ ଶାରଳା ଚଣ୍ଡୀ ନାମେ । ଆଃ ପଃ
ଚିତ୍ରୋତ୍ପଳା ନଦୀ ଯେ ଉତ୍ତର ଭାଗେଣ ।
ଜଙ୍ଘେର ପୁର ନାମେ ଅଛଇ ପାଟଣ । ମଃ ପଃ ।
କନକ ପୁର ପାଟଣା ଘର ପର୍ଶୁରାମ ।
ମୁହିଁ ତାର ଅନୁଜ ଶାରଳା ଦାସ ନାମ ।"

ଏହି କତିପୟ ପଂକ୍ତିରୁ ସ୍ପଷ୍ଟ ବୁଝା ଯାଏ ଯେ ଜ୍ୟେଷ୍ଠ ପରଶୁରାମ କନକପୁରରେ ଏବଂ କନିଷ୍ଠ ଶାରଳ ଗ୍ରାମରେ ବାସ କରୁଥିଲେ । ଦୁଇ ଭାଇ ଦୁଇଟି ଗ୍ରାମ ଅଧିକାର କରି-ଥିବାର ସୂଚିତ ହେଉଅଛି, ଉଭୟଙ୍କର କିଛି ବିଷୟ ସମ୍ପତ୍ତି ଥିଲା । ନାବିକ ପରଶୁରାମ ହୁଏତ ଚନ୍ଦ୍ରଭାଗା ନଦୀରେ

ନୌକାରେ ବ୍ୟବସାୟ ଦ୍ୱାରା ଧନୀ ହୋଇଥିବେ । ବୁଦ୍ଧ ନଦୀ (ଅଧୁନାକ ନାମ ବୁଢ଼ ନଈ) ବର୍ତ୍ତମାନ ଝନ୍ତୁଳପଦା ଗ୍ରାମର ପଶ୍ଚାଦ୍ଭାଗରେ ବହମାନା । ଏହି ଗ୍ରାମ କନକପୁରର ପ୍ରାୟ ଏକ କ୍ରୋଶ ଉତ୍ତରରେ ଅବସ୍ଥିତ । ଏହାର ଉତ୍ତରରେ ମହାନଦୀ ପ୍ରବାହିତା । ଏହି ଝେନ୍ତୁଲପଦା କବିଙ୍କର ଜନ୍ମସ୍ଥାନ ନ ଥିଲେହେଁ ଏଥିରେ ତାହାଙ୍କର ଚରମ କାଳ ଅତିବାହିତ ହୋଇଅଛି । ସ୍ଥାନୀୟ ଲୋକେ କହନ୍ତି ଯେ, କବିଙ୍କର ଯଥେଷ୍ଟ ଭୂସମ୍ପତ୍ତି ଥିଲା । ଶାହେଲରେ ଅବସ୍ଥାନ କାଳରେ ଦୂରବର୍ତ୍ତୀ, ପୂର୍ବ ସୀମାନ୍ତ ଗ୍ରାମମାନଙ୍କରେ କୁଜଙ୍ଗର ଦୁଷ୍ଟ ଲୋକମାନେ ଆସି ଲୁଣ୍ଠନ ଓ ଉତ୍ପାତ କରୁଥିଲେ । ଉକ୍ତ ସ୍ଥାନମାନ ତେତେବେଳେ ଜଙ୍ଗଲମୟ ଥିବାରୁ ଲୁଣ୍ଠନର ସୁବିଧା ହେଉଥିଲା । ଶାରଳା ଦାସ ଏହି ଅତ୍ୟାଚାର ନିବାରଣ ନିମିତ୍ତ ଜଙ୍ଗଲ ମଧ୍ୟସ୍ଥିତ ବାହାମା ଗ୍ରାମରେ ଅବସ୍ଥାନ କଲେ । କଥିତ ଅଛି, ଏହି ବାହାମାରେ କିଛିକାଳ ବାସ କଲା ଉତ୍ତାରେ କବିଙ୍କୁ ଦେବୀଙ୍କର ସ୍ୱପ୍ନାଦେଶ ହେଲା ଯେ, 'ତୁ ଯେଉଁଠାରେ ରହିଲେ ମୋତେ ସଙ୍ଗରେ ଘେନି ଯା' । ଭକ୍ତ ବିସ୍ମିତ ହୋଇ ଗତି ବିଧି ଜିଜ୍ଞାସା କରନ୍ତେ ଦେବୀ ଉତ୍ତର କଲେ "ତୁ ପଛକୁ ନ ଚାହିଁ ଆଗେ ଆଗେ ଚାଲ୍, ମୁଁ ପଛେ ପଛେ ଯାଉଅଛି । ଆଉ ଯେଉଁଠାରେ ତୁ ଗୋଟିଏ ବକ ପଷାଣ ଧରିଥିବାର ଦେଖିବୁ † ସେହିଠାରେ ଗୃହ ନିର୍ମାଣ କରିବୁ ।" ତଦନୁସାରେ କବି ସବିସ୍ମୟ ଭାବରେ ଆଗେ ଆଗେ ଗଲେ । କିଛିଦୂର ଯାଇ ରହସ୍ୟ ଜାଣିବାକୁ ପଛକୁ ଚାହାନ୍ତେ ଦେବୀ ଆଉ ନ ଚଳି ସେହିଠାରେ

---

† ସ୍ଥାନର ମାହାତ୍ମ୍ୟ ପ୍ରତିପାଦନ ଏ ପ୍ରକାର କଳ୍ପନାର ଉଦ୍ଦେଶ୍ୟ । ବକ ପଷାଣ ଧରିଥିବା ବାର୍ତ୍ତା ଏବେ ସୂଚିତ ହେଉଅଛି, ସେ ସ୍ଥାନରେ ମୂର୍ତ୍ତିସ୍ୱରୂପା ଶ୍ୟାମା ନାମା ଦେବୀଙ୍କୁ ଚିହ୍ନି ପାରେ ।

ରହିଲେ । * ତଦନନ୍ତର କବି କିଛିଦୂର ଅଗ୍ରସର ହୋଇ ଗୋଟିଏ ପତ୍ରଆରେ ସ୍ୱପ୍ନାନୁରୂପ ବକ ସଞ୍ଚାଣ ଧରି ଥିବାର ଦେଖି ଦେବୀଙ୍କ ଆଦେଶାନୁସାରେ ତହିଁ ଗୃହ ନିର୍ମାଣର ବ୍ୟବସ୍ଥା କଲେ । ଏହି ସ୍ଥାନ ବର୍ତ୍ତମାନ 'ଝଙ୍କଡ଼' ବୋଲି ଖ୍ୟାତ ହୋଇଅଛି । ତାହାର ଚତୁଃପାର୍ଶ୍ୱରେ ବର୍ତ୍ତମାନ ତେନ୍ତୁଳିପଦା ଗ୍ରାମର ସୀମା ରହିଅଛି । ଏହି ଜନଶ୍ରୁତିରୁ ସ୍ପଷ୍ଟ ଅନୁମିତ ହୋଇଅଛି ଯେ, ଯେଉଁ ତେନ୍ତୁଳିପଦା ଏହିକ୍ଷଣି ବହୁ ଲୋକାଳୟ ପୂର୍ଣ୍ଣ; କବିଙ୍କ ଅବସ୍ଥାନ କାଳରେ ତାହା ସେପରି ନ ଥିଲା । ହୁଏତ ଗୋଟିଏ ବଡ଼ ପଡ଼ିଆ ଥିଲା । ସମ୍ଭବତଃ ସେଠାରେ ଅନେକ ତେନ୍ତୁଳି ଗଛ ଥିବାରୁ ଅଥବା ତେନ୍ତୁଳି ବ୍ୟବସାୟୀମାନଙ୍କର କେନ୍ଦ୍ରସ୍ଥଳ ଥିବାରୁ ପଛେ ତାହାର ନାମ ଏପରି ହୋଇଅଛି । ଅନୁମାନ ହୁଏ, ଭକ୍ତ କବିଙ୍କ ଅବସ୍ଥାନରେ ଅନେକେ ସତ୍ସଙ୍ଗ ଲାଭ ଆଶାରେ ତାହାଙ୍କର ସହବାସୀ ହେବାକୁ ଲାଗିଲେ । ସେମାନଙ୍କ ଦ୍ୱାରା ଏବଂ କବିଙ୍କ ବଂଶଧରଙ୍କ ଦ୍ୱାରା କ୍ରମାଗତ ଏହି ସ୍ଥାନ ଜନାକୀର୍ଣ୍ଣ ଏବଂ ଲୋକାଳୟପୂର୍ଣ୍ଣ ହୋଇ ବର୍ତ୍ତମାନ ପ୍ରାୟ ସହସ୍ର ଲୋକର ବାସଭୂମି ହୋଇଅଛି । ଏହି ସ୍ଥାନର ଭୂମି ଅତି ଉର୍ବରା । ଉତ୍କଳ ଜାହ୍ନବୀ ମହାନଦୀର ଜଳରେ ଏହି ଅଞ୍ଚଳ ସୁଜଳ ଏବଂ ଶସ୍ୟଶ୍ୟାମଳ ।

ଶାରଳା ସିଂହବାହିନୀ ଚଣ୍ଡୀ ବିଶେଷ । ପୁରୀର ବିମଳା, ଯାଜପୁର ବିରଜା, କାକଟପୁର ମଙ୍ଗଳା ବାଣପୁର ଭଗବତୀ ପ୍ରଭୃତି ପ୍ରାୟ ଝଙ୍କଡ଼ର ଶାରଳା ଉତ୍କଳ ପ୍ରସିଦ୍ଧ । ଏହି ଦେବୀଙ୍କର ପୂଜାଦି ଅନ୍ୟାନ୍ୟ ପ୍ରସିଦ୍ଧ ଦେବୀପୀଠର ଅନୁରୂପ

* ଏହି ମୂର୍ତ୍ତି ଏବେ 'ବଳଶାରଳା' ନାମରେ ଖ୍ୟାତ ହୋଇଅଛନ୍ତି ଏବଂ ଏହି ମନ୍ଦିର ତେନ୍ତୁଳିପଦା ଗ୍ରାମର ଅଦୂରରେ ଅବସ୍ଥିତ ।

ହୋଇଥାଏ । ଏହାଙ୍କ ସମ୍ମୁଖରେ ମଧ୍ୟ ବଳିଦାନର ବିଧି ଅଛି । ଦଶହରା ଦିନ ଗୋଟିଏ ମହିଷ ବଳି ମଧ୍ୟ ଦିଆ ଯାଏ । ପୂଜାବିଧି ବ୍ୟତୀତ ବର୍ଷରେ ତିନିଥର ପ୍ରସିଦ୍ଧ ଯାତ୍ରା ହୁଏ । ଦଶହରା ଯାତ୍ରା, ଚନ୍ଦନ ଯାତ୍ରା ଏବଂ ବିଷୁବ ସଂକ୍ରାନ୍ତିର ଘଣ୍ଟପାଟୁଆ-ଯାତ୍ରା । ଦଶହରା ଦିନ ଦେବୀ ବିମାନରେ ପୂର୍ବସ୍ଥାନ ଶାଶୋଳର ଚରକା ପଡ଼ିଆ * ପର୍ଯ୍ୟନ୍ତ ଯାତ୍ରା କରନ୍ତି । ଗ୍ରୀଷ୍ମକାଳରେ ସେଠା ସରୋବରରେ ଚନ୍ଦନ ଯାତ୍ରା ହୁଏ । ଏ ଯାତ୍ରା ଉତ୍କଳରେ ଅନ୍ୟ କୌଣସି ଦେବୀଙ୍କର ହେବାର ଶୁଣା ନାହିଁ । ଏସବୁ ବିଧି ସମ୍ଭବତଃ କବିଙ୍କଦ୍ୱାରା ଦେବୀଙ୍କର ମହିମା ପ୍ରକାଶିତ ହେବା ପରେ ଚକ୍ରବର୍ତ୍ତୀ ଭୁଜଙ୍ଗ ରାଜାଙ୍କ ଦ୍ୱାରା ନିର୍ଦ୍ଧାରିତ ହୋଇଅଛି । ସେ ସମସ୍ତ ବ୍ୟୟ ନିର୍ବାହ ନିମନ୍ତେ ଉକ୍ତ ରାଜା ପୂର୍ବସଂଜ୍ଞା ବୃତ୍ତି ଛଡ଼ା ଅନ୍ତୁର କିଛି ଅଧିକାବୃତ୍ତି ଲଗାଇ ଦେଇଅଛନ୍ତି । ଏହି ଦେବୀ ମାହେଶ୍ୱରୀ ହେଲେହେଁ ଏହାଙ୍କୁ ଅନେକେ ବୈଷ୍ଣବୀ ବୋଲି ପ୍ରକାଶ କରିଥାନ୍ତି । କବି ମଧ୍ୟ ଅନ୍ଧିପର୍ବରେ ସ୍ଥାନେ କହିଅଛନ୍ତି ।—

"ମହାଯୋଗେଶ୍ୱରୀ ସେ ପରମାବଇଷ୍ଣବୀ ।
ପ୍ରତ୍ୟକ୍ଷ ବରଦ୍ୟନ୍ତି ସେ ପରମା ସାଧବୀ ।
ବାଞ୍ଛା ସାତୁକ୍ୟ ଅଟେ ସେଦେବୀ ମହାମାଈ ।
ପାଷାଣ ରୂପତା ଭାଷା ପାଷାଣ ଫୁଟଇ ।"

ବୈଷ୍ଣବୀ ସମ୍ମୁଖରେ ବଳିଦାନ ନିଷିଦ୍ଧ, କିନ୍ତୁ ଏଠାରେ ସେ

---

* ଏହି ପଡ଼ିଆରେ ପୂର୍ବେ ପାଇଁଆ ଘାତ ବା ଝାଡ଼ୋଦ୍ଧ ବହୁଳ ପରିମାଣରେ ହେଉଥିଲା । ଏକଦା ଗୋଟିଏ ପାଇଁଆ ଚେରକ ଅର୍ଥାତ୍ (ଲୌହକାଲକବତ୍) ହୋଇ ମରି ଯିବାରୁ ସେ ପ୍ରକାର ସାଧନା ବନ୍ଦ ହେଲା ଏବଂ ସେହି ଦିନଠାରୁ ତାହାର ନାମ 'ଚରକା ପଡ଼ିଆ' ହୋଇଅଛି ବୋଲି ସ୍ଥାନୀୟ ଲୋକେ କହନ୍ତି ।

ନକ୍ଷିବାଚରଣ ହେଉ ଥିବାରୁ କାର୍ତ୍ତିକ ପୂର୍ଣ୍ଣିମା ଦିନ ଏହି ସଙ୍କୀର୍ତ୍ତନାଦ୍ୱାରା ତାହାର ପ୍ରାୟଶ୍ଚିତ୍ତ ବିଧାନ ହୁଏ ବୋଲି ସ୍ଥାନୀୟ ଲୋକେ କହନ୍ତି । ଏହି ଚଣ୍ଡୀଙ୍କ ମନ୍ଦିର ବର୍ତ୍ତମାନ କନକପୁରରେ ଅବସ୍ଥିତ । ଜାମଦଗ୍ନ୍ୟ ପରଶୁରାମ ଏହି ମୂର୍ତ୍ତିର ପ୍ରତିଷ୍ଠା କରି ସ୍ୱୟଂ ପୂଜା କରୁଥିବାର କଥା କବି ମହାଭାରତରେ ଉଲ୍ଲେଖ କରିଅଛନ୍ତି * । ଏ ସମ୍ବନ୍ଧରେ ବହୁକାଳ ପୂର୍ବରୁ ଏହିପରି କିମ୍ବଦନ୍ତୀ ଅଛି ଯେ, ଧନୁର୍ଦ୍ଧର ପରଶୁରାମ ତୀର୍ଥାଟନ କାଳରେ ନାନା ତୀର୍ଥ ପର୍ଯ୍ୟଟନ କରି ଉତ୍କଳ—ଅନ୍ତର୍ଗତ ଏହି ଚନ୍ଦ୍ରଭାଗା କୂଳରେ ଉପସ୍ଥିତ ହେଲେ । ନଦୀରେ ସ୍ନାନ କରିବାକୁ ଗଲାବେଳେ ସ୍ୱକରଭୂଷଣ ମହାଶରାସନର କୌଣସି ଆଧାର ନ ପାଇ ନଦୀତୀରରେ ତାହାକୁ ଲମ୍ବ ଭାବରେ ପୋତି ବସିଲେ; ମାତ୍ର ଯେଉଁଠାରେ ରଖିବାକୁ ଗଲେ ସେଠାରେ ଧନୁଟି ସମ୍ପୂର୍ଣ୍ଣ ଗଳିଗଲା । ବୀରବର ଧନୁରକ୍ଷା ଲାଗି ଇତସ୍ତତଃ କରୁ କରୁ ଗୋଟିଏ ସ୍ଥାନରେ କିୟଦଂଶ ପଶିଯାଇ ଧନୁଟି ନିମ୍ନଭାଗରେ ରହିଗଲା । ତହୁଁ ସେ ସ୍ନାନ କରି କୌତୂହଳବଶତଃ ଉକ୍ତ ସ୍ଥାନ ଖୋଳି ଦେଖିଲେ ଧନୁ ତଳେ ଖଣ୍ଡିଏ କୃଷ୍ଣଶିଳା ରହିଅଛି । ସେହି ମନୋହର ଶିଳା ଖଣ୍ଡିକ ପାଇ ବୀର ପରଶୁରାମ ସେଥିରେ ଧନୁଅଗ୍ରରେ ଗୋଟିଏ ଚଣ୍ଡୀମୂର୍ତ୍ତି ଖୋଦିତ କଲେ ଏବଂ ସେହି ସ୍ଥାନରେ ଚଣ୍ଡୀମୂର୍ତ୍ତିର ପ୍ରତିଷ୍ଠା କରି ପୂଜାବିଧି ଆରମ୍ଭ କଲେ । ପରଶୁରାମ ବିଜନ ସ୍ଥାନରେ ଚଣ୍ଡୀ ପୂଜା କରିଥିବାର ଶାରଳା

---

* ଜମଦଗ୍ନି ନନ୍ଦନ ପୂଜିଲେ ପରଶୁରାମ । ଦଧିବାମନ ଦସ୍ତାରେ ତୋହି
ସହି ନାମ—ବଂ ପଃ ପୃ ୧୫

ମହାଭାରତରେ ବର୍ଣ୍ଣିତ ଅଛି । କଟକଚଣ୍ଡୀଙ୍କ ହସ୍ତରେ ପରଶୁରାମଦତ୍ତ କୁଠାର ଅଛି ବୋଲି କବି ପ୍ରକାଶ କରିଅଛନ୍ତି (୧) । ସେ ଯାହାହେଉ, ବର୍ତ୍ତମାନ ଏହି ମୂର୍ତ୍ତିଟିକି ନିରୀକ୍ଷଣ କଲେ ତାହା କୌଣସି ସୂକ୍ଷ୍ମ ଶିଳ୍ପାସ୍ତ୍ର ଦ୍ୱାରା ଖୋଦିତ ହୋଇଥିଲା ପରି ବୋଧହୁଏ ନାହିଁ । ଏଥିର ସ୍ଥୂଳଶିଳ୍ପ ଦେଖି ଅନେକେ କିଂବଦନ୍ତୀକି ସତ୍ୟ ବୋଲି ବିଶ୍ୱାସ କରନ୍ତି । କିନ୍ତୁ ପରଶୁ-ରାମ ଏଠାକୁ ଆସନ୍ତୁ ବା ନ ଆସନ୍ତୁ, ଚଣ୍ଡୀ ପୂଜା କରନ୍ତୁ ବା ନ କରନ୍ତୁ ସେ ଯେ ନାନା ତୀର୍ଥ ପର୍ଯ୍ୟଟନ କରିଥିଲେ ଏହା ଇତିହାସ ପ୍ରସିଦ୍ଧ । ବର୍ତ୍ତମାନ ସୁଦ୍ଧା ଏହି ଅଞ୍ଚଳରେ 'ତୀର୍ଥ-ମଠ' ନାମକ ସ୍ଥଳରେ ପରଶୁରାମଙ୍କର ଆସ୍ଥାନ ଅଛି । ପାଣ୍ଡବ-ମାନେ ଏହି ଚନ୍ଦ୍ରଭାଗାତୀରକୁ ତୀର୍ଥାଟନରେ ଆସି ଦେବୀଙ୍କୁ ପୂଜା କରିଥିଲେ ବୋଲି କହନ୍ତି ମହାଭାରତରେ ବର୍ଣ୍ଣିତ ଅଛି (୨) । ଅନ୍ୟାନ୍ୟ ପ୍ରାଚୀନ ସଂସ୍କୃତ ଗ୍ରନ୍ଥରେ ମଧ୍ୟ ଏହି ଚନ୍ଦ୍ରଭାଗା ନଦୀର ନାମ ଶୁଣାଯାଏ । ବର୍ତ୍ତମାନେ ଏହା କ୍ଷୀଣ-ସ୍ରୋତା ହେଲେହେଁ ପୂର୍ବେ ଉତ୍କଳର ଏହା ଗୋଟିଏ ପୁଣ୍ୟ ସଲିଳା ସ୍ରୋତସ୍ୱତୀ ଥିଲା ବୋଲି ଅନୁମାନ ହୁଏ । ଏହାର ତଟପ୍ରଦେଶ ଘୋର ଜଙ୍ଗଲମୟ ଥିବାରୁ ଅନେକ ରାଜା

---

(୧) ଯେଉଁ କୁଠାରରେ ପ୍ରଭୁ ପର୍ଶୁରାମ ଥିର । ନିକ୍ଷେତ୍ରୀ କରିଲେ ପୃଥ୍ୱୀ ଏକବିଂଶବାର ।

ସେ ରୁଧିର ନେଇ ପିତୃ ତର୍ପଣ କଲେ । ଅବଶେଷେ ଭଗବତୀ ପୂଜା ସମାପିଲେ ।

ସେ କୁଠାର ନାମବନ୍ତ୍ୟ ଭୈରବୀଙ୍କି ଦେଲେ । ଭଗବତୀ ତାକୁ ନେଇ ହସ୍ତରେ ଧଇଲେ । ସ୍କ ପୁଃ ପୃ ୧୮

(୨) ବର୍ତ୍ତମାନ ଏହି ଚନ୍ଦ୍ରଭାଗାରେ 'ପାଣ୍ଡବକୁଠ' ବୋଲି ଗୋଟିଏ ତୀର୍ଥ ଅଛି ।

ମୃଗୟାର୍ଥ ଏଠାକୁ ଆସିଥିବାର ପ୍ରମାଣ ମିଳେ (୧)। କିନ୍ତୁ ସେ ଚନ୍ଦ୍ରଭାଗା ଏହି, ଅବା କୋଣାର୍କ ଚନ୍ଦ୍ରଭାଗା ! ତାହା ଏଠାରେ ସିଦ୍ଧାନ୍ତ କରିବା ଅତି ଗୁରୁତ୍ୱବ୍ୟାପାର । କୋଣାର୍କ ଠାରେ ଅବଶ୍ୟ ଏହିକ୍ଷଣି ଚନ୍ଦ୍ରଭାଗା ନାମରେ କୌଣସି ନଦୀ ନାହିଁ; ମାତ୍ର ଏତିକରେ ସେ ସନ୍ଦେହ ନିରସ୍ତ ହୋଇ ପାରିବ ନାହିଁ, ହୁଏତ ଅତି ପ୍ରାଚୀନ କାଳର ସେହି ନଦୀ କାଳକ୍ରମେ ଲୁପ୍ତ ହୋଇ ସାଗର ସୈକତରେ ପରିଣତ ହୋଇଥିବ । ସେ ଯାହାହେଉ ଏହି ନଦୀ ତୀରବର୍ତ୍ତିନୀ ଚଣ୍ଡୀ ଉତ୍କଳରେ ବହୁ କାଳରୁ ପ୍ରସିଦ୍ଧ ଏବଂ ବାଗ୍‌ଦେବୀରୂପେ ଆରାଧିତ ହୋଇ ଆସୁଅଛନ୍ତି । ଆଦି ମହାକବି ଶାରଳାଦାସଙ୍କଠାରୁ ବର୍ତ୍ତମାନ କାଳର ଅତି ସାମାନ୍ୟ କବି (ଯେ ଆଧୁନିକ ଶିକ୍ଷାପ୍ରାପ୍ତ ନୁହନ୍ତି) ପର୍ଯ୍ୟନ୍ତ ଝଙ୍କଡ଼ବାସିନୀ ଶାରଳାଙ୍କ ସ୍ତୁତି ଦ୍ୱାରା ସ୍ୱକୃତିରେ ମଙ୍ଗଳାଚରଣ କରି ଆସୁଅଛନ୍ତି । ଏ ଯୁଗର ବରକବି ରାଧାନାଥ ମଧ୍ୟ ଏହି ଅନୁଗତିରୁ ବଞ୍ଚିତ ହୋଇ ନାହାନ୍ତି । ମହାଭାରତୀୟ କଥାରମ୍ଭରେ ସେ 'ପଙ୍କଜବାସିନୀ ଦେବି ଉତ୍କଳଭାରତି-ଶାରଳେ', ବୋଲି ମହାଭାରତବତ୍ସଳା ଶାରଳାଙ୍କୁ ଆବାହନ କରିଅଛନ୍ତି । ପଙ୍କଜବାସିନୀ ବିଶେଷଣ ଭାରତୀଙ୍କ ଠାରେ ପ୍ରଯୋଜ୍ୟ ସତ୍ୟ; କିନ୍ତୁ ଏ ଶାରଳାଙ୍କର ତାହା

(୧) ଅସ୍ତି କଳିଙ୍ଗବଂଶେ ଭୁକ୍ମାଙ୍ଗଦୋ ନାମ ନୃପତିଃ । ସଂଚ ଦର୍ଶ୍ଚିତସ୍ୟ ବ୍ୟାପାରକ୍ରମେଣ ଚନ୍ଦ୍ରଭାଗାତୀରେ ସମାବେଶିତକଟକୋ ବର୍ତ୍ତତ ଇତି ବ୍ୟାଖ୍ୟାନାଂ ମୁଖାତ୍ କିଂବଦନ୍ତୀ ଶ୍ରୂୟତେ । ପଞ୍ଚତନ୍ତ୍ର ଓ ହିତୋପଦେଶ । ଏହା କଳିଙ୍ଗର ଅନ୍ତର୍ଗତ । ପୂର୍ବେ ଉତ୍କଳର ନାମ 'ଉତ୍କଳିଙ୍ଗ' ଥିଲା । 'ରୁକ୍ମାଙ୍ଗଦ' ଗେଙ୍ଗଗଙ୍ଗଙ୍କର ଜଣେ ପୂର୍ବପୁରୁଷ । ଗଙ୍ଗବଂଶୀୟ ରାଜାମାନଙ୍କର ନାମାବଳୀରେ 'ରୁକ୍ମାଙ୍ଗଦ' ନାମ ଅଛି ।

ନାହିଁ । ସଂସ୍କୃତରେ ବାଗ୍‌ଦେବୀଙ୍କର ନାମ ଶାରଦା, * ଶାରଳା ନୁହେ । ଅନେକ ଶାରଳା ଓ ଶାରଦାଙ୍କୁ ଏକାର୍ଥକ ଶବ୍ଦ ବୋଲି ମନେ କରନ୍ତି, କିନ୍ତୁ ବ୍ୟୁତ୍ପତ୍ତି ଦେଖିଲେ ଯଥାର୍ଥରେ ତାହା ନୁହେ । ଏଠାରେ ଶାରଳା ନାମଟି ଚଣ୍ଡୀଙ୍କର ବିଶେଷଣ ହୋଇଅଛି । ସମ୍ଭବତଃ ଅଧିଷ୍ଠିତସ୍ଥାନ 'ଶରଳ' ନାମାନୁସାରେ ଦେବୀଙ୍କର ନାମ ଶାରଳା ହୋଇଅଛି । କବି ମଧ୍ୟ ଗ୍ରନ୍ଥର ଅନେକ ସ୍ଥାନରେ ବିଶେଷତଃ ମହାଭାରତର ଆରମ୍ଭରେ କେବଳ ଶାରଳା ନ ଲେଖି ଶାରଳା ଚଣ୍ଡୀ ଅର୍ଥାତ୍ ଶରଳ-ବାସିନୀ ଚଣ୍ଡୀ ଲେଖିଅଛନ୍ତି । † ଅଧିଷ୍ଠିତ ସ୍ଥାନର ନାମ ଅନୁସାରେ ଅଧିଷ୍ଠାତ୍ରୀ ଦେବତାଙ୍କର ଏବଂ ଅଧିଷ୍ଠାତ୍ରୀ ଦେବତାର ଅନୁସାରେ ଅଧିଷ୍ଠିତ ସ୍ଥାନର ନାମ କରଣ ହୋଇଥିବାର ଦୃଷ୍ଟାନ୍ତ ଏ ଭାରତରେ ଭୂରି ଭୂରି ରହି ଅଛି । ଅତଏବ ଏହି ଗ୍ରାମର ନାମାନୁସାରେ ଦେବୀଙ୍କର ନାମ ଶାରଳା ହୋଇଥିବା ଖୁବ ସମ୍ଭବ । ବର୍ତ୍ତମାନ ଏହି ଗ୍ରାମ ବଡ଼ ଶାରୋଳ ବୋଲି ପରିଚିତ । ଏହାର ଉପାନ୍ତବର୍ତ୍ତୀ ଜଳାଶୟ ନିକଟରେ ଆଜି କାଲି ଭଗ୍ନ ଇଷ୍ଟକସ୍ତୂପ ମିଳୁଅଛି । ତାହା ନିକଟରେ 'ଲଣ୍ଡା ଦେଉଳ' ନାମରେ ଗୋଟିଏ ଅତି ପ୍ରାଚୀନ ଗଣେଶ ମନ୍ଦିର ଅଛି । ଏହି ମନ୍ଦିର ମଧ୍ୟ ପୂର୍ବେ ଶୂନ୍ୟବସତି ଥିବା ପକ୍ଷରେ ସାକ୍ଷ୍ୟ

---

* ଅସିତ ଗିରିସମଂସ୍ୟାତ୍ କଜ୍ଜଳଂ ସିନ୍ଧୁପାତ୍ରେ । ସୁରତରୁବର ଶାଖା ଲେଖନୀପତ୍ର ମୁର୍ବ୍ବୀ ।

ଲିଖତି ଯଦି ଗୃହୀତ୍ୱା ଶାରଦା ସର୍ବ୍ବକାଳଂ । ତଦପି ତବଗୁଣାନା ମୀଶ ପାରଂ ନ ଯାତି । ମହିମ୍ନ ।

† ଶାରଳାଚଣ୍ଡୀ ନାମ ଅଟଇ ସେହି ଦେବୀ । ବଇଦେହୀ ମାହେଶ୍ୱରୀ ଶାରଳାଚଣ୍ଡୀ ନାମେ । ଅ: ପୁ: । ଦଶ୍ୱାରେ ବହଇ ମୋହେ ଶ୍ରୀଚଣ୍ଡୀ ଶାରଳା ମ: ପୁ: ।

ପ୍ରଦାନ କରୁଅଛୁ । କାରଣ ଗଣେଶ (୧) ଶୂଦ୍ରମାନଙ୍କର ଆରାଧ୍ୟ ଦେବତା । ଶୂଦ୍ରବସତି ଭିନ୍ନ ଅନ୍ୟତ୍ର କେବଳ ଗଣେଶ ମନ୍ଦିର (ଶିବ ମନ୍ଦିରରୁ ପୃଥକ୍) ପ୍ରାୟ ଦେଖାଯାଏ ନାହିଁ । ଉକ୍ତ ପ୍ରାଚୀନ ମନ୍ଦିର ସହିତ ଶାରଳା ମନ୍ଦିରଟି ସଂଲଗ୍ନ ଥିଲା । ମନ୍ଦିରଟି କେତେ ଉଚ୍ଚ ବା କିପରି, ତାହା ଜାଣିବାର କୌଣସି ଉପାୟ ନାହିଁ । ଶ୍ରୀଯୁକ୍ତ ରାଜେନ୍ଦ୍ରଲାଲ ମିତ୍ରଙ୍କ ଗ୍ରନ୍ଥରେ ଓଡ଼ିଶା ଅନ୍ତର୍ଗତ ସମସ୍ତ ମନ୍ଦିରର ବର୍ଣ୍ଣନା ଅଛି । କିନ୍ତୁ ଶାରଳା ମନ୍ଦିର କଥା କୌଣସିଠାରେ ଲିଖିତ ନାହିଁ । ଉଲ୍ଲେଖ ମଧ୍ୟ ଅସମ୍ଭବ ; କାରଣ ବହୁ ପୂର୍ବକାଳରୁ ତାହାର ବିଲୋପ ସାଧନ ହୋଇଥିଲା । ମନ୍ଦିର ପାର୍ଶ୍ୱରେ ଯେପରି ବୃହତ୍ ପୁଷ୍କରିଣୀ ଖୋଦିତ ହୋଇଥିବାର ଦେଖା ଯାଉଅଛି ସେଥିରୁ ବୋଧ ହୁଏ ତାହା ଗଙ୍ଗବଂଶୀୟ କୌଣସି ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ସମ୍ଭବତଃ ସୁପ୍ରସିଦ୍ଧ ଅନଙ୍ଗଭୀମ ଦେବଙ୍କର ଏକୀର୍ତ୍ତି । (୨) କବିଙ୍କ ମୃତ୍ୟୁର ପ୍ରାୟ ଏକଶତ ବର୍ଷ ଅତୀତ ନ ହେଉଣୁ ମନ୍ଦିରଟି ବୋଧ ହୁଏ ଧୂଳିସାତ୍ ହୋଇଥିଲା । ଏ ଦୁଃସମୟ ଉତ୍କଳର ହିନ୍ଦୁ ସାଧାରଣଙ୍କୁ ସୁବିଦିତ । ହିନ୍ଦୁ କୀର୍ତ୍ତି-କର୍ତ୍ତରୀ କଳାପାହାଡ଼ ଯେତେବେଳେ ଉତ୍କଳାରଣ୍ୟରେ ପଶି ମତ୍ତମାତଙ୍ଗବତ୍ ହିନ୍ଦୁମନ୍ଦିରମହାଦ୍ରୁମର ଧ୍ୱଂସ ସାଧନ କଲା,

(୧) ବିପ୍ରାଣାଂ ଦୈବତଂ ଶମ୍ଭୁଃ କ୍ଷତ୍ରିୟାଣାନ୍ତୁ ମାଧବଃ । ବୈଶ୍ୟାନାନ୍ତୁ ଭବେଦ୍‌ବ୍ରହ୍ମା ଶୂଦ୍ରାଣାଂ ଗଣନାୟକଃ । ମନୁଃ ।

ଅଦ୍ୟାବଧି ମଧ୍ୟ ଅନେକ ଶୂଦ୍ର ଘରେ ଗଣେଶମୂର୍ତ୍ତିର ପୂଜା କରୁଥିବାର ପ୍ରମାଣ ମିଳେ । ଅଦ୍ୟାପି ମଧ୍ୟ ଦେଖାଯାଏ ଅର୍ଦ୍ଧ ବଙ୍ଗଦେଶର ଅଧିବାସୀ ପ୍ରାୟ ଗାଣପତ୍ୟ ।

(୨) ଗଜପତି ଅନଙ୍ଗଭୀମ ଷାଠିଏ ଦେଉଳ, ଦଶଟି ସେତୁ, ଷାଠିଏ ବାପୀ, ଏକକୋଟି ସରୋବର ଏବଂ ଏକଶ ବାଥାନ ଘାଟ ନିର୍ମାଣ କରାଇଥିଲେ । ଓଃ ଇଂ ପୃ ୭୭

ସେତେବେଳେ କ୍ଷୁଦ୍ର ଗୁଳୁପ୍ରାୟ୍ ଏହି ଦେବୀ ମନ୍ଦିରଟି ଭୂଲୁଣ୍ଠିତ ହୋଇଥିବ । କଥିତ ଅଛି ଏହି ଦୁର୍ବୃତ୍ତ ଯବନ ଯେତେବେଳେ ଉକ୍ତ ଅଞ୍ଚଳରେ ଉପସ୍ଥିତ ହେଲା, ସେତେବେଳେ ଧର୍ମପ୍ରାଣ ହିନ୍ଦୁମାନେ ବ୍ୟସ୍ତ ବ୍ୟସ୍ତ ହୋଇ ଶାରଳା ଦେବୀଙ୍କୁ ନେଇ ସନ୍ନିହିତ ଜଳାଶୟରେ ଲୁଚାଇ ରଖିଲେ । ରାକ୍ଷସ ଅଦର୍ଶନରେ ଅତୀବ କ୍ରୋଧାନ୍ଧ ହୋଇ ମନ୍ଦିରଟି ଧୂଳିସାତ୍ କରି ସ୍ୱୀୟ ଜିଘାଂସାବୃତ୍ତି ଚରିତାର୍ଥ କରିଥିଲା । ଅନନ୍ତର କୌଣସି ହିନ୍ଦୁ ଭୂମ୍ୟଧିକାରୀ ବା ରାଜା (ସମ୍ଭବତଃ କୁଜଙ୍ଗ ରାଜା) ମୂର୍ତ୍ତିଟିକୁ ସେଠାରୁ ଅଣାଇ ପରଶୁରାମ ପ୍ରତିଷ୍ଠିତ କନକପୁରରେ ନୂତନ ମନ୍ଦିର ନିର୍ମାଣ ଓ ପୁଷ୍କରଣୀ ଖନନ କରାଇ ଦେବୀଙ୍କର ପୁନଃ ପ୍ରତିଷ୍ଠା କରାଇଲେ ଏବଂ ଭୂବୃତ୍ତି ଖଞ୍ଜି ଦେଇ ରାଜ ବଧିରେ ପୂଜା କରିବାର ସୁବ୍ୟବସ୍ଥା କରି ଦେଲେ । ସେହି ଦିନଠାରୁ ମନ୍ଦିରର ସେବାଦି ଯଥା ନିୟମରେ ଚାଲି ଆସୁଅଛି । ବର୍ତ୍ତମାନ ଏହାର କାର୍ଯ୍ୟ ପରିଚାଳନା ଗୋଟିଏ 'ପରିଚାଳକ ସମିତି' ଉପରେ ନିର୍ଭର କରୁଅଛି ।

କବିଙ୍କ ଆୟୁର ପ୍ରଥମାର୍ଦ୍ଧ ଲୁଣ୍ଠ, ଦ୍ୟୁତ ଶଙ୍କଟରେ କଟି ଯାଇଥିଲା ଏବଂ ଅଧିକାଂଶ କାଳ ଶାରଳା ସେବାରେ ଅତିବାହିତ ହୋଇଥିଲା ବୋଲି ଏଥିପୂର୍ବେ ଉଲ୍ଲେଖ କରିଅଛୁଁ ।

କବିଙ୍କର ଦେହତ୍ୟାଗ ଓ ଧର୍ମ ବିଶ୍ୱାସ ।

କେବଳ ସେହି ଦେବୀଙ୍କଠାରେ ତାହାଙ୍କର ଭକ୍ତି ଯେ ଅଚଳା ଥିଲା, ଏହା ନୁହେ । ସମସ୍ତ ହିନ୍ଦୁ ଦେବ ଦେବୀଙ୍କ ପ୍ରତି ସେ ଭକ୍ତିମାନ୍ ଥିଲେ । ବାଗର୍ଥ ଲାଭ ନିମିତ୍ତ ଉତ୍କଳ ଶାରଦା ଶାରଳାଙ୍କୁ ଯେପରି ଧ୍ୟାନ କରୁଥିଲେ ଇହ ସଂସାରରୁ ମୁକ୍ତିଲାଭ ନିମିତ୍ତ ସେହିପରି ଜଗନ୍ନାଥଙ୍କୁ ସର୍ବଦା

ଧ୍ୟାନ କରୁଥିଲେ । (୧) ଜଗନ୍ନାଥ ଦର୍ଶନରେ ତାହାଙ୍କର ହୃଦୟ ଶୀତଳ ହୋଇଥିଲା ଏବଂ ସେଥିରେ ସେ ଆପଣାକୁ ସଦ୍ୟୋମୁକ୍ତ ପ୍ରାୟ ମଣିଥିବା ତଦୀୟ ଉକ୍ତିରୁ ପ୍ରକାଶ ପାଏ । କବି ଅତି ନିରହଂକାର ଏବଂ ସରଳ ସ୍ୱଭାବ ଥିଲେ । ସେ ଅତି ସାଧୁ ଏବଂ ଅପୂର୍ବ କବିତ୍ୱ ସମ୍ପନ୍ନ ଥିଲେହେଁ ସେଥିରେ ତାଙ୍କର କିଛି ମାତ୍ର ଆତ୍ମବଡ଼ିମା ପ୍ରକାଶ ପାଇବାର ଦେଖା ଯାଏ ନାହିଁ ; ଏହା ତାହାଙ୍କ ଈଶ୍ୱର ନିର୍ଭରତାର ସୁଲଭ ନିଦର୍ଶନ । ମହାଭାରତ ରଚନାନ୍ତେ କବି କିଛିକାଳ ଶାରଳା ମନ୍ଦିରରେ ତାହାର ପ୍ରତିବନ୍ଧ କରି, ଚରମକାଳ ବୁଦ୍ଧନଦୀ-ତୀରବର୍ତ୍ତୀ ସ୍ଥାନରେ (ବର୍ତ୍ତମାନ ତେନ୍ତୁଳିଆ ପଦାର ଏକ ଅଂଶ) ଗୋଟିଏ ଆଶ୍ରମ ସ୍ଥାପନପୂର୍ବକ କେବଳ ଧ୍ୟାନଧାରଣରେ କାଳାତିପାତ କରି କାଳକୁ ପ୍ରତୀକ୍ଷା କରି ରହିଲେ । ତେତେବେଳେ ସେଠା ଲୋକେ ତାହାଙ୍କୁ 'ମୁନି ଗୋସାଇଁ' ବୋଲି ଡାକୁଥିଲେ ଏବଂ ବର୍ତ୍ତମାନ ଏହି ଆଶ୍ରମଟି 'ମୁନି ଗୋସାଇଁ ମଠ' ନାମରେ ଅଖ୍ୟାତ । ଏହି ମଠରେ ଅବସ୍ଥାନ କାଳରେ ସର୍ବଂକଷକାଳ ଅନ୍ତେ ତାହାଙ୍କର ଲୋକାନ୍ତର ପ୍ରସ୍ଥାନରେ ମଠ କଲା ନାହିଁ । କୋଣାର୍କ ଯାତ୍ରା ଯୋଗେ ଯେଉଁ ମାଘ ସପ୍ତମୀଟି କବିଙ୍କର ଅତି ପ୍ରିୟ ଦିବସ ଥିଲା, ସମ୍ଭବତଃ ସେହି ଯାତ୍ରା ଦିବସରେ ଉତ୍କଳର ଆଦି ମହାକବିଙ୍କର ମହାଯାତ୍ରା ହୋଇଅଛି । ବର୍ତ୍ତମାନ ପର୍ଯ୍ୟନ୍ତ ଏହି ମଠରେ ପ୍ରତିବର୍ଷ ମାଘ ସପ୍ତମୀ ଦିନ ଗୋଟିଏ ମହୋତ୍ସବ ବା ମଉଚ୍ଛବ ହୁଏ । ମୁନି ଗୋସାଇଁଙ୍କ ମୃତ୍ୟୁ ଉତ୍ତାରେ ତାହାଙ୍କର ଶବଦାହ ହୋଇ

---

(୧) ପୁରୁଷୋତ୍ତମ ଦେବର ଜନ୍ମେ ଜନ୍ମେ ଦାସ । ଅପବିତ୍ର ମୂର୍ଖ ମୁହିଁ ମୋର ଦୋଷ ବୁଝି । ମାଧବ ନାମରେ ମୋର ହେଉ ସବୁ ସିଦ୍ଧି । ସ୍ୱଃ ପଃ ପୃ ୧୮

ନ ଥିବାର ଅନୁମାନ ହୁଏ । ହୁଏତ ବ୍ରହ୍ମଜ୍ଞାନୀ ବୋଲି (୧) ତାହାଙ୍କର ଶବ ଦାହ ନ କରି ଉକ୍ତ ମଠ ନିକଟରେ ସମାଧିସ୍ଥ କରିଥିଲେ । ଆଜିକାଲି ସେହି ସମାଧିର ଭଗ୍ନାବଶେଷ ଏବଂ ସେଠାରେ ଗୋଟିଏ ବରଗଛ ଅଛି । କବିଙ୍କ ବଂଶଧରମାନେ କହନ୍ତି ଯେ, ଏହି ବରଗଛ ମୂଳରେ ଗୋଟିଏ ସାନ 'ଜଟାଗଛ' (୨) ଥିଲା, ପ୍ରାୟ ଦଶବର୍ଷ ହେଲା ସେ ଗଛଟି ସେଠାରୁ ଅନ୍ତର୍ହିତ ହୋଇଅଛି ।

କବିଙ୍କର ବଂଶଧର ।

ଶୂଦ୍ରମୁନି ଆଜନ୍ମ ବୈରାଗୀ ନୁହନ୍ତି, ଏହାର ଆଭାସ ପୂର୍ବ ପ୍ରସଙ୍ଗରେ ମିଳିଅଛି । ତେବେ ସେ ଯେ ସମ୍ପୂର୍ଣ୍ଣ ବିଷୟାସକ୍ତ ଥିଲେ ଏହା କହିନାହୁଁ । ତାଙ୍କର ଚତୁର୍ବର୍ଗ ମଧ୍ୟରୁ ଆମ୍ଭେମାନେ ଦୁଇଟି ବର୍ଗ ଅର୍ଥାତ୍ ଅର୍ଥକାମ ସମ୍ବନ୍ଧରେ କିଛି ଆଲୋଚନା କରି ନାହୁଁ । କବିଙ୍କର ଅର୍ଥସ୍ପୃହା ନ ଥିଲା କିଂବା ସେ ଧନବାନ୍ ହେବାକୁ କାମନା କରି ନଥିଲେ, ଏହା ସହଜରେ ଅନୁମେୟ । ଏକେ ଜନ୍ମରୁ ସେ ଜଣେ ସାଧାରଣ କୃଷକର ସନ୍ତାନ; ତହିଁରେ ପୁଣି ଦାରପରିଗ୍ରହ କରି ଅଛନ୍ତି କି ନାହିଁ

(୧) ବ୍ରହ୍ମ ଉପାସନା କରିଅଛନ୍ତି ଯେ ସେହି,
ଜ୍ଞାନବନ୍ତ କାୟାକୁ ଦହିବୁ କାହିଁ ପାଇଁ ।
ବ୍ରହ୍ମଜ୍ଞାନୀ ଅଟନ୍ତି ସେ ଶୁଦ୍ଧ ତାଙ୍କ ଦେହ,
ତକାମ୍ଭ ନ କରି ଏଥେଁ ମୃତ୍ତିକା ଯେ ଦିଅ । ଆଶ୍ରମ: ପ: ପୃ ୨୨ ।

(୨) ମୂଳଙ୍କ ଜଟା ଉପରେ ଉଠି ଥିବାରୁ ତାହାର ନାମ 'ଜଟାଗଛ' ହୋଇଥିଲା; ଏହି ଗଛର କାଣ୍ଡ କଣ୍ଟକିତ ଏବଂ ଫୁଲ ସୁଆଁ ଫୁଲପରି, କିନ୍ତୁ ଫଳ ନାହିଁ । ବଣବଣା ଗଛ ସଙ୍ଗରେ ଏହାର ସୌସାଦୃଶ୍ୟ ଅଛି । ଏପ୍ରକାର ଗଛ ଆଉ କେଉଁଠି ପ୍ରାୟ ଦେଖା ଯାଏ ନାହିଁ । ଏହାର ପତ୍ରରେ ଅନେକ ରୋଗର ଉପଶମ ହୋଇଥିବାର ପ୍ରାଚୀନ ଲୋକଙ୍କ ମୁଖରୁ ଶୁଣା ଯାଏ ।

ସନ୍ଦେହ । ଗ୍ରନ୍ଥରେ ଏ ସମ୍ପର୍କର ଉଲ୍ଲେଖ ନାହିଁ ; ଆଉ ଉଲ୍ଲେଖ ନଥିବା ମଧ୍ଯ ସ୍ୱାଭାବିକ । କାରଣ ମହାଭାରତ ରଚନା ପୂର୍ବରୁ କବି ଗୃହତ୍ୟାଗୀ ହୋଇ ସନ୍ନ୍ୟାସ ଅବଲମ୍ବନ କରି ଥିଲେ । ତେତେବେଳେ ଗୃହ ସହିତ ତାଙ୍କର କିଛି ସମ୍ପର୍କ ନ ଥିଲା । ଅନ୍ଯତ୍ର ସନ୍ଦେହର କଥା, ସେ ସମ୍ବନ୍ଧରେ କିଂବଦନ୍ତୀରୁ ମଧ୍ୟ କିଛି ଜଣା ଯାଇ ପାରୁ ନାହିଁ । କେବଳ ପ୍ରଥମ କିଂବଦନ୍ତୀରୁ ପ୍ରକାଶ ପାଏ ଯେ ତାଙ୍କର ଅନେକ ଭାଇ ଥିଲେ । କବି ମଧ୍ୟ ଜ୍ୟେଷ୍ଠ ସହୋଦରର ଥିବାର ଉଲ୍ଲେଖ କରି ଅଛନ୍ତି । ସୁତରାଂ ଗୃହସ୍ଥ ଥିଲା ବେଳେ ତାଙ୍କର ଯେ ବିବାହ ହୋଇ ନଥିବ, ଏହା କୁହା ଯାଇ ନ ପାରେ । ଗାର୍ହସ୍ଥ୍ୟ ପରେ ସନ୍ନ୍ୟାସ ଆଶ୍ରୟର ଦୃଷ୍ଟାନ୍ତ ଭାରତରେ ବିରଳ ନୁହେ ବରଂ ତାହା ଏକପ୍ରକାର ସାଧାରଣ ବିଧି । ଯେଉଁ ମହାତ୍ମାମାନେ ସଦ୍‌ଧର୍ମ ପ୍ରବର୍ତ୍ତନଦ୍ୱାରା ଲୋକହିତ ସାଧନ କରି ଅଛନ୍ତି, ସେମାନେ ସୁଦ୍ଧା ଏହି ଗାର୍ହସ୍ଥ୍ୟ ଧର୍ମ ବିଯୁକ୍ତ ନୁହନ୍ତି । କାହାର କାହାର ଆଜନ୍ମ ବୈରାଗ୍ୟ ଦେଖା ଯାଇ ଥାଏ ; କିନ୍ତୁ ଅନେକଙ୍କୁ ଏହି ସଂସାରର ଜ୍ୱାଳା ବା ଅଶାନ୍ତିର ତାଡ଼ନାରେ ବୈରାଗ୍ୟ ଆଶ୍ରୟ କରିବାକୁ ହୋଇ ଅଛି । ପୂର୍ବଶଂସିତ ଶୂଦ୍ରକବି ତୁକାରାମ ଜଣେ ବିଖ୍ୟାତ ବଣିକର ପୁତ୍ର ଥିଲେ । ପାରିବାରିକ କେତେକ ଘଟଣାରେ ବିଶେଷତଃ କଳତ୍ରର ବାଗ୍‌ବାଣରେ ଜର୍ଜରିତ ହୋଇ ସେ ବହୁଧନ ଭ୍ରାତୃ ବନ୍ଧୁ ପରିଜନାଦି ତ୍ୟାଗ ପୂର୍ବକ ସନ୍ନ୍ୟାସ ଅବଲମ୍ବନ କରିଥିଲେ । ଅସ୍ମାନଙ୍କର ଏହି ଶୂଦ୍ର କବି ମଧ୍ୟ ସେହିପରି ବହୁ କୁଟୁମ୍ବୋଚିତ ଦୁଃଖ ଓ ଅଶାନ୍ତିର ତାଡନାରେ ପୁତ୍ରୋତ୍ପାଦନାନ୍ତେ ଗାର୍ହସ୍ଥ୍ୟର ନିଷ୍ପ୍ରୟୋଜନୀୟତା ଉପଲବ୍ଧି

କବି ପଣ୍ଡିତ ବୈରାଗ୍ୟ ଆଶ୍ରୟ କରିଥିବେ ଏଥିରେ ଆଶ୍ଚର୍ଯ୍ୟ କଣ? ତାହା ହେଲେ କବିଙ୍କର ପୁତ୍ର କାହାନ୍ତି? ତାଙ୍କର ସମଗ୍ର ବୃତ୍ତାନ୍ତ ଜାଣିବା ଦୂରେ ଥାଉ ନାମ ସୁଦ୍ଧା ନିଶ୍ଚିତ ଭାବରେ ଜାଣିବାର କୌଣସି ଉପାୟ ନାହିଁ। ଏସମ୍ବନ୍ଧରେ କିଛି ଜାଣିବାକୁ ଚେଷ୍ଟାକଲେ ଅମ୍ଭମାନଙ୍କୁ ସେହି ଜନଶ୍ରୁତି ପ୍ରତି ଉନ୍ମୁଖ ରହିବାକୁ ହେବ। ସ୍ଥାନୀୟ ଲୋକଙ୍କ ମଧ୍ୟରୁ କେହି କେହି କହନ୍ତି, ଶାରଳାଦାସଙ୍କ ପୁତ୍ରର ନାମ 'ଧନପରିଡ଼ା'। ଏହି ଧନପରିଡ଼ା ପିତାଙ୍କ ନାମରେ ତଦାନୀନ୍ତନ ସମାଜ ଦ୍ୱାରା ଯଥେଷ୍ଟ ସମ୍ମାନିତ ହୋଇ ପରିଡ଼ା ଗୋଷ୍ଠୀରେ ସାମନ୍ତ ରୂପେ ପୂଜା ପାଇଥିବାର ନିମ୍ନୋକ୍ତ ଡାକ ବଚନରୁ ଅନୁମାନ ହୁଏ। "ବଣରେ ବଣ ହରିଡ଼ା, ଅଠର ଗଡରେ ଅଠର କଣ୍ଟି ପାଆନ୍ତି ଧନପରିଡା।" କିନ୍ତୁ ଦିନେ ପ୍ରସଙ୍ଗ-କ୍ରମେ 'ଶାରଳଃ ଶ୍ରୀଧର ଶ୍ରୈତ୍ରମଣିଃ ପର୍ଶୁରାମସ୍ତଥା'। କବିଙ୍କର ଜଣେ ବଂଶଧରଙ୍କ ମୁଖରୁ ଗୋଟିଏ ଶ୍ଳୋକର ଏହି ଚରଣଟିର ଆବୃତ୍ତି ଶୁଣି ସନ୍ଦେହ ହେଲା, ଶ୍ରୀଧରାଦି ତାହାଙ୍କର ବଂଶଧର କି? ଅନ୍ୟ ପକ୍ଷରେ ଦେଖିଲେ ଆହୁରି ଏକ ସନ୍ଦେହ ଉପସ୍ଥିତ ହୁଏ। କବିଙ୍କର ଭ୍ରାତାଙ୍କର ନାମ 'ପରଶୁରାମ'। ଏଣେ ପୁଣି କବି ବହୁଭ୍ରାତୃକ ବୋଲି କିଂବଦନ୍ତୀରୁ ପ୍ରକାଶ ପାଇଅଛି। ତାହା ହେଲେ ଏମାନେ କବିଙ୍କର ଭାଇ ହୋଇ ପାରନ୍ତି। ମାତ୍ର ଏ ଅନୁମାନଠାରୁ ଜନ ଶ୍ରୁତିର ପ୍ରଭାବ ଅଧିକ ଦେଖା ଯାଉଅଛି। ଜନଶ୍ରୁତି ଅନୁସାରେ କବିଙ୍କର ଉତ୍ତରାଧିକାରୀ ଶ୍ରୀଧର ଏବଂ ଶ୍ରୀଧରଙ୍କର ମଣି। ମଣିଙ୍କର ପୁତ୍ର ପରଶୁରାମ। ଏମାନେ ରାଜପ୍ରସାଦ ସ୍ୱରୂପ ଝଙ୍କଡ ପ୍ରଗନା ନିଷ୍କର ଭୋଗ କରୁଥିଲେ। କେହି କେହି କହନ୍ତି ଯେ, ସେମାନେ ଉକ୍ତ

ପ୍ରଗନା ସହିତ ଗଣ୍ଡିଚୋ ହରିହରପୁର ଏବଂ ବେଣାହାର ଏହି ଛକୋଟି ସନ୍ନିହିତ ପ୍ରଗନା ମଧ୍ୟ ସେମାନଙ୍କର ଅଧିକାର ଭୁକ୍ତଥିଲା । (୧) ପରଶୁରାମଙ୍କ ଅନ୍ତେ ତଦୀୟ ପୁତ୍ର ଅର୍ଜୁନ ଉତ୍ତରାଧିକାରୀ ହେଲେ । କଥିତଅଛି ଏହି ପରଶୁରାମଙ୍କର ଦୁଇ ପତ୍ନୀଥିଲେ । ପ୍ରଥମା ଗର୍ଭଜାତ ଅର୍ଜୁନ ଭୂମ୍ୟଧିକାରୀ ହେବାରୁ ତଦୀୟ ବିମାତା ସ୍ୱୀୟ ପୁତ୍ର ଲାଗି କଳହ ଆରମ୍ଭ କଲେ । ଏ ଦ୍ୱନ୍ଦ୍ୱରେ ଝଙ୍କଡ ପ୍ରଗନା ପୂର୍ବଖଣ୍ଡି ଓ ଦକ୍ଷିଣ ଖଣ୍ଡି ଏହି ଦୁଇ ଭାଗରେ ବିଭକ୍ତ ହେଲା । ଅର୍ଜୁନଙ୍କ ଉତ୍ତାରୁ ଅନ୍ୟ କୌଣସି ଉତ୍ତରାଧିକାରୀଙ୍କର ନାମଗନ୍ଧ ଜଣାଯାଏ ନାହିଁ । ସୁପ୍ରସିଦ୍ଧ ଭୂମ୍ୟଧିକାରୀ ହଳଧର ସାମନ୍ତରାୟ ମହାପାତ୍ର ବୋଧହୁଏ ଇହାଙ୍କର ସପ୍ତମ କିମ୍ବା ଅଷ୍ଟମ ବଂଶଧର ହେବେ । ସାମନ୍ତରାୟ ମହାପାତ୍ର ପ୍ରଭୃତି ମର୍ଯ୍ୟାଦାସୂଚକ ଉପାଧିମାନ ସୁପ୍ରସିଦ୍ଧ ଗଜପତି ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳରେ ସୃଷ୍ଟ ଏବଂ ସେହି କାଳରୁ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଉକ୍ତ ଉପାଧିମାନ ପାଇ ଆସୁଥିଲେ । ତଦନୁସାରେ ସଦ୍‌ବଂଶଜ ସମ୍ଭ୍ରାନ୍ତ ହଳଧର ଦୁଇଟି ଉକ୍ତୋପାଧିରେ ଭୂଷିତ ହୋଇଥିଲେ । ଏହି ଉପାଧି ଦ୍ୱୟରୁ ସୂଚିତ ହେଉଅଛି ତାହାଙ୍କର ରାଜକାର୍ଯ୍ୟରେ କିଛି ହସ୍ତ ଥିଲା ଏବଂ ତାହାଙ୍କ ପ୍ରଦତ୍ତ ସନନ୍ଦମାନଙ୍କରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ଝଙ୍କଡ ପ୍ରଗନାରେ ତାହାଙ୍କର ସ୍ୱତ୍ୱ ଥିଲା । ବର୍ତ୍ତମାନେ ତଦୀୟ ବଂଶଧରମାନେ ଟୃହଅଛନ୍ତି ସ୍ଥାନ ମାତ୍ର ବସିଥିଲେ ହେଁ ତାଙ୍କର ପରମ୍ପରା ଜାଣିବାର କୌଣସି ଅସୁବିଧା ନାହିଁ ।

(୧) ଏହି ଚାରି ପ୍ରଗନା ମଧ୍ୟରେ ହରିହରପୁର ବୃହତ୍ତମ ଏବଂ ଗଣ୍ଡିଚୋ କ୍ଷୁଦ୍ରତମ । ୧୮୩୭ । ୩୮ର ଭୂମିମାପ ଅନୁସାରେ ହରିହରପୁରର କ୍ଷେତ୍ରଫଳ ପ୍ରାୟ ୬୪ ବର୍ଗ ମାଇଲ । ଝଙ୍କଡ଼ର ପ୍ରାୟ ୫୭ ବର୍ଗ ମାଇଲ । ବେଣାହାରର ୫୭ ଏବଂ ଗଣ୍ଡିଚୋର ପ୍ରାୟ ୧୫ ବର୍ଗ ମାଇଲ ।

ଟେଓକି ତନ୍ମଧ୍ୟରେ କେହି ଉପରୋକ୍ତ ରାଜକୀୟ ଉପାଧିରେ ଭୂଷିତ ନୁହନ୍ତି । ସମସ୍ତଙ୍କର ସେହି ପୂର୍ବ ପଦବୀ 'ପରିଡ଼ା' ବର୍ତ୍ତମାନ ପରିଜା । କେବଳ ସେହି ଗୋତ୍ରରେ ଯେଉଁମାନେ ବିଶିଷ୍ଟବ୍ୟକ୍ତି, ସେହିମାନେ ଚୌଧୁରୀ ମଙ୍ଗରାଜ ପ୍ରଭୃତି ଉପାଧିରେ ବିଶେଷିତ ହୋଇଅଛନ୍ତି । ଅନେକେ ମଧ୍ୟ ଏହି ସବୁ ରାଜଦତ୍ତ ଉପାଧି ବଂଶାନୁକ୍ରମେ ଭୋଗ କରି ଆସି ପରେ ନିଜର ଉତ୍କର୍ଷ ପ୍ରଦର୍ଶନାର୍ଥ ମୌଳିକ ଉପାଧି 'ପରିଜା' କାଟି ଦେଇ ତାହା ସ୍ଥଳରେ ଚୌଧୁରୀପ୍ରଭୃତି ଯୋଗ କରି ଦେଲେଣି । (୧) ମାତ୍ର ଯାହା କରନ୍ତୁ ସେମାନେ ସଗୋତ୍ର ବା ଏକ ବଂଶଜ । ଏହି ପରିଜା ଏବଂ ଚୌଧୁରୀପ୍ରଭୃତିଙ୍କର ବାସସ୍ଥାନ ଉକ୍ତ ପ୍ରଗନା ଚତୁଷ୍ଟୟ ମଧ୍ୟରେ ଆବଦ୍ଧ । ଏମାନେ ସମସ୍ତେ ଆପଣାକୁ ଶାରଳା ଦାସଙ୍କ ବଂଶଧର ବୋଲି ପରିଚିତ କରାନ୍ତି । କେବଳ ନାମତଃ ସେମାନେ ଏହି ପରିଚୟ ଦିଅନ୍ତି ନାହିଁ, ଯଥାର୍ଥରେ ସେମାନେ ଶାରଳା ଦାସଙ୍କୁ ପୂର୍ବପୁରୁଷରୂପେ ପୂଜା କରନ୍ତି । ଅଦ୍ୟାପି ସେହି ବଂଶଧରମାନଙ୍କର ବିଶେଷତଃ ତନ୍ତୁଳିପଦା ଅଧିବାସୀମାନଙ୍କର ଶ୍ରାଦ୍ଧାଦିରେ କୁଳଶ୍ରେଷ୍ଠ ଶାରଳାଦାସଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଦିଆ ଯାଏ । କେବଳ ଶ୍ରାଦ୍ଧରେ ନୁହେ, ନୂତନ ପାକାଦିରେ ମଧ୍ୟ ଶାରଳାଦେବୀ ଏବଂ ତତ୍ପଶ୍ଚାତ୍ ଶାରଳା ଦାସଙ୍କୁ ନୈବେଦ୍ୟ ଉତ୍ସର୍ଗ କରାଯାଏ । ଏମାନେ ବିଶେଷରେ ଶାରଳା ଭକ୍ତ । ପ୍ରତ୍ୟେକ ନବଅନୁଷ୍ଠାନରେ ଇଷ୍ଟଦେବୀ ଶାରଳାଙ୍କର ସ୍ମରଣ ନ କଲେ ସେମାନେ ନିଃଶଙ୍କ ହୋଇ ପାରନ୍ତି ନାହିଁ । ସବାରମ୍ଭରେ 'ଶ୍ରୀ ଜଗନ୍ନାଥ

---

(୧) ଏଣିକି ଅନେକେ ସାମନ୍ତମାନ୍ୟ ବଂଶଧର ନିଜର ଚିତ୍ତଗତ ଦୁର୍ବାବ୍ୟଞ୍ଜକ ଉପାଧିଟିକୁ ପରିବର୍ତ୍ତନ କରି ସ୍ୱାଧୀନ ଭାବରେ ରାଜକୀୟ ଉପାଧି କୋଟିରୁ ମନୋମତ ଗୋଟିଏ ଉପାଧି ବାଛିନେଇ ସ୍ୱୀୟ ନାମର ବେଳାଙ୍ଗ ଭୂଷିତ କଲେଣି । କିନ୍ତୁ ସେମାନଙ୍କର ଏ କୃତ୍ରିମ ଅବରଣ କାଳର କିଂଚିତ୍ ନିକଟରେ ଅତି ଅକର୍ମଣ୍ୟ କରି ।

ମହାପ୍ରଭୁଙ୍କ ଶ୍ରୀ ଚରଣେ ଶରଣ' ଲେଖିବା ଯେପରି ଏଦେଶରେ ସାଧାରଣରୀତି, ଶାରଳା ବଂଶଧରମାନଙ୍କର ସେହିପରି ପତ୍ରାରମ୍ଭରେ 'ଶ୍ରୀ ପରମେଶ୍ୱରୀ (ଶାରଳା)ଙ୍କ ଚରଣେ ଶରଣ' ଲେଖିବା ସାଧାରଣ ରୀତି ହୋଇଅଛି । କେବଳ ଏତିକି ନୁହେଁ ସନନ୍ଦରେ ସୁଦ୍ଧା, 'ଶାରଳା ସନ୍ତକ' ଲେଖା ଥିବାର ସ୍ପଷ୍ଟ ଦେଖା ଯାଉଅଛି । (୧) ଏସବୁ ଦ୍ୱାରା ସେମାନେ ଶାରଳା-ସେବାକୁ କାଉମ୍ୟ ବୃତ୍ତି ବୋଲି ସପ୍ରମାଣ କରି ଦେଉଅଛନ୍ତି । ବର୍ତ୍ତମାନ ଏହି ରୀତି ଏବଂ ସଂସ୍କାର କ୍ରମଶଃ ଊଣା ହୋଇ ଆସୁଅଛି ସତ୍ୟ, ମାତ୍ର ଏହି ମୌଳିକତା ଏହିକ୍ଷଣି ଲୋପ ପାଇ ନାହିଁ କିଂବା ଶୀଘ୍ର ଲୋପ ପାଇବାର ସମ୍ଭାବନା ନାହିଁ । ଉକ୍ତ

---

(୧) ତଲୁଲପଦାବାସୀ ଶ୍ରୀଯୁକ୍ତ ଚିନ୍ତାମଣି ପରିଜାଙ୍କଠାରୁ ଖଣ୍ଡିଏ ସନନ୍ଦ ହସ୍ତଗତ ହୋଇଥିଲା । ତାହାର ପ୍ରତିଲିପି ଏହି—

"ଶ୍ରୀଜୀବନଦାସ ଗୋସାଇଁକି ହଳଧର ସାନ୍ତରାଙ୍କର ଦେଲୁଁ ଦେବୋତ୍ତର ରେଖ, ଏ ନିମନ୍ତେ ଦେବୋତ୍ତର ରେଖ ଲେଖି ଦେଲୁଁକି ଶ୍ରୀବଳଦେବ ଠାକୁରଙ୍କ ଅମୃଣିପ୍ପା ପାଇଁ ଆମ୍ଭ ତାଲୁକରୁ ଏଠେ ଗାଁଅଛୁ ଜମି ଅଣତରିଶ ମା ୨୯ । ୧୨୪ ମାଣ ଦୁଇ ପାଅ ଦେଲୁଁ ଏ ଜମି ଅମଳ କରିବ ।

ଏ ଜମି ଯେ ହରଣ କରିବ ଶ୍ରୀ ବଳଦେବଙ୍କ ଚରଣେ ଅପ୍ରାଧୀ ହୋଇବ— ଆମ୍ଭ ବାଳଗୋପାଳଙ୍କୁ ତ୍ରିକାଳି ସନ୍ଧ୍ୟାରେ ଆଶୀର୍ବାଦ କରୁଥିବ । ଏଜମି ଯାବତ ଚନ୍ଦ୍ରାର୍କେ ଅମଳ କରୁଥିବ ।

ଏରେଖ ଶ୍ରୀ ହଳଧର ସାନ୍ତରା ମହାପାତ୍ରଙ୍କର ପ୍ରମାଣ ଶ୍ରୀ ଶାରଦା ସନ୍ତକ ।" ସନନ୍ଦ ତଳେ ଏହି ସବୁ ଗ୍ରାମମାନଙ୍କର ନାମ ଥିଲା ଯଥା— ତେନ୍ତୁଳିପଦା, ଝୁମ୍ପୁରପୁର, ଗୋବିନ୍ଦପୁର, ଶାଦାପୁର, ବଡ ଶାଗେଳି, ଦୟାଳପୁର, ଅରଡଙ୍ଗ, କୋଠମୂଲ, ବାଇଗୋଳି, ଦଣ୍ଡବର, ଇନ୍ଦୁପା, ତରଡୋଳ, ଏଲ୍ଲାସପୁର, ନଦାକଣା, କାଳପଟି, ମହମୁଦାବାଦ, ଇତ୍ୟାଦି । ତାଲୁକା' କଥାରୁ ସ୍ପଷ୍ଟ ଅନୁମିତ ହେଉଅଛି—ହଳଧର ମରହଟ୍ଟାଙ୍କ ଶାସନ ସମୟରେ ବର୍ତ୍ତମାନ ଥିଲେ, କାରଣ ତାଲୁକ କଥାଟି ମରହଟ୍ଟାଙ୍କ ସମୟରେ ବିଶେଷରେ ପ୍ରଚଳିତ ବୋଲି ହଣ୍ଟର ସାହେବ ନିର୍ଦ୍ଦେଶ କରିଅଛନ୍ତି । ଯଥା— ଚୌଧୁରୀ ତାଲୁକଦାର' (Chaudhury talukdar' II. P. 130.)

ବଂଶଧରମାନେ ପୁଣି ଦୁଇ ଶାଖାରେ ବିଭକ୍ତ ବୋଲି କହନ୍ତି । ଏକ ଉକ୍ତ ସାମନ୍ତରାୟ ବଂଶୀୟ, ଅନ୍ୟ ମହାରଥୀ ବଂଶୀୟ ବୋଲି ପରିଚିତ । ମହାରଥୀ ଉପାଧିଧାରୀ ସନ୍ତୁ, ହଳଧରଙ୍କର ଭ୍ରାତା ଅଟନ୍ତି । ଏହି ମହାପାତ୍ର ସାମନ୍ତରାୟ ଉପାଧିରୁ ସେମାନଙ୍କର ଯେପରି ରାଜପୂଜ୍ୟତା ଓ ରାଜନୀତି କୁଶଳତାର ପରିଚୟ ମିଳୁଅଛି, ମହାରଥୀ ଉପାଧିରୁ (୧) ସେହିପରି ରଣ କୁଶଳତାର ପରିଚୟ ମିଳୁ ଅଛି, ବୋଧ ହୁଏ ଏହି ବଂଶଧର ମାନେ ରାଜସମ୍ମାନର ମର୍ଯ୍ୟାଦା ରକ୍ଷା ନିମିତ୍ତ ନିଜେ ରାଜନ୍ୟୋଚିତ ଧନୁର୍ବେଦାଦିର ଶିକ୍ଷା କରୁଥିଲେ । ସେମାନଙ୍କ ଅଧଃପୁରୁଷ ସ୍ୱୟଂ କବି ତହିଁରେ ଅପାରଗ ନ ଥିଲେ, ଏହା ତଦୀୟ ମହାଭାରତ ପାଠରୁ ଅନୁମାନ କରାଯାଏ । ସେ ଯାହା ହେଉ, ବର୍ତ୍ତମାନେ ଏମାନଙ୍କ ଅଗ୍ୱର ବ୍ୟବହାର ଏବଂ ସାମାଜିକ ରୀତି ନୀତି ସବୁ କରଣଙ୍କ ସହିତ ସମାନ । ଅନ୍ୟାନ୍ୟ କରଣଙ୍କ ସହିତ ଏମାନଙ୍କର ବୈବାହିକ ସମ୍ବନ୍ଧ ହେଉଅଛି । ତଥାପି ଏମାନେ ଅଜି ଯାଏ ଶୂଦ୍ରାପବାଦରୂପଜୁଗୁପ୍ସା ବ୍ୟଞ୍ଜକ ସ୍ୱରୂପାଖ୍ୟାନରୁ (୨) ମୁକ୍ତିଲାଭ କରି ନାହାନ୍ତି । "ଜନାନନେ କଃ କର ମର୍ପୟିଷ୍ୟତି ।" ସେଥି ପାଇଁ ଲୋକଙ୍କ ମୁହଁରେ ହାତ ଦେବ କିଏ ?

---

(୧) Mahapatra—Great minister.
Maharatha—Great warrior.

Santara—Border chief (Stalistical accounts of Bengal. Vol. XVIII P. 129)

(୨) କାହିଁକି କେଜାଣି ଏହି 'ଶୂଦ୍ର' ଶବ୍ଦ ଉଚ୍ଚାରଣରେ ଏହି ପତ୍ରିକାମାନେ ବଡ଼ ମର୍ମାହତ ହୁଅନ୍ତି । ପୂର୍ବେ ଯାହାଥାଉ, ବର୍ତ୍ତମାନ ଯେତେବେଳେ ସେମାନେ ଉଚ୍ଚଆସନ ଲାଭ କରୁଅଛନ୍ତି, ସେତେବେଳେ ସେମାନଙ୍କର ସେଥି ପାଇଁ ଅପଶବ୍ଦ ଧନ୍ୟ ମନେ କରି ଆନନ୍ଦ ପ୍ରକାଶ କରିବା ଉଚିତ । ତାହା ନ କରିବା ଦ୍ୱାରା ସେମାନେ ବରଂ ଜୁଗୁପ୍ସାର ପ୍ରଶ୍ରୟ ଦିଅନ୍ତି ।



# ମହାଭାରତ ।

ପ୍ରତିପାଦିତ ବିଷୟ ।

ଭକ୍ତକବି ଜଗନ୍ନାଥଙ୍କ ଶ୍ରୀମଦ୍ ଭାଗବତ ଯେପରି ଉତ୍କଳର ଘରେ ଘରେ ପଠିତ ଏବଂ ସର୍ବଜନାଦୃତ, ଆଦିକବି ଶାରଳା ଦାସଙ୍କ ବିରାଟ ମହାଭାରତ ମଧ୍ୟ ସେହିପରି ଗ୍ରାମେ ଗ୍ରାମେ ପଠିତ ଏବଂ ସୁଗୃହୀତ । ବିଗତ ପଞ୍ଚଶତାବ୍ଦୀ ମଧ୍ୟରେ କେବଳ ତାଳପତ୍ର ଛଡ଼ା ସର୍ବବିଧ ଗ୍ରନ୍ଥ ପ୍ରଚାରର ତାଦୃଶ ସୁବିଧା ନ ଥିଲେହେଁ ଏହା ଉତ୍କଳର ସର୍ବ ଅଞ୍ଚଳରେ ପରିବ୍ୟାପ୍ତ ହୋଇଅଛି । ଗଡ଼ଜାତରେ ଏହା ରାଜା କୃଷ୍ଣସିଂହଙ୍କ (୧) କୃତ ମହାଭାରତ ପରି ସୁପ୍ରଚଳିତ ନୁହେ ବୋଲି ଅମ୍ଭେମାନେ ଶୁଣିଥାଉଁ ; କିନ୍ତୁ ସେ ମହାଭାରତ ରଚନା ପୂର୍ବରୁ ଅବଶ୍ୟ ଏହି ମହାଭାରତ ସେ ସବୁ ସ୍ଥଳରେ ପ୍ରଚଳିତ ହୋଇଥିବ । ହୁଏତ ସିଂହଙ୍କ ମହାଭାରତ ଉତ୍ପତ୍ତିରେ ଏହାର ପ୍ରଚାର କ୍ରମଶଃ ଏଣିକି ସେ ସବୁ ଅଞ୍ଚଳରେ ଊଣା ହୋଇଅଛି । ତଥାପି ସମ୍ବଲପୁର ପ୍ରଭୃତି ସୁଦୂରବର୍ତ୍ତୀ ଉତ୍କଳଭାଷୀ

---

(୧) କୃଷ୍ଣସିଂହ ମହାଭାରତ ଅନୁବାଦକ । କବି ଧରାକୋଟ ରାଜ୍ୟର ଅଧିପତି ଥିଲେ । ସେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ମହାଭାରତ ରଚନା ଆରମ୍ଭ କରିଥିଲେ । ଶକାବ୍ଦ ୧୭୦୫ ବା ୧୭୮୩ ଖ୍ରୀଷ୍ଟାବ୍ଦରେ ବିରାଟ ପର୍ବର ରଚନା ସମାପ୍ତ ହୋଇଥିବାର କବିଙ୍କ ଉକ୍ତିରୁ ପ୍ରମାଣିତ ହୁଏ । ଅତଏବ ତାହାଙ୍କ ମହାଭାରତ ରଚିତ ହେବାର ଆଜକୁ ପ୍ରାୟ ୧୩୦ ବର୍ଷ ହେବ । "ଏକାଳକୁ ପାଞ୍ଚ ଉଭର ସତରଶ । ଗଣିବାରେ ଅଙ୍କ ହୋଇଅଛି ଶେଷ । ରାମଚନ୍ଦ୍ର ସିଂହ ରାଜାଙ୍କର ନାତି । ନୀଳାଦ୍ରି ସିଂହଙ୍କର ଅଟେ ମୁଁ ସନ୍ତତି । ଧରାକୋଟ ରାଜ୍ୟରେ ହୋଇ କରି ରାଜା । ଅଧରମ କଥାରେ ବୁଡ଼ାଇଲି ମଜା ।—ବିରାଟପର୍ବ ।"

ଜନପଦରେ ଏହାର ସୁପ୍ରଚଳନ ଥିବାର ପ୍ରମାଣ ପାଉଁ । ବର୍ତ୍ତମାନେ ପୁଣ ପ୍ରକାଶିକା କୋମ୍ପାନିଙ୍କ ପ୍ରସାଦରୁ ଏହି ମହାଭାରତର ଅଷ୍ଟାଦଶ ପର୍ବ ମୁଦ୍ରିତ ହୋଇ ପାଠକ ସାଧାରଣଙ୍କର ଅନାୟାସ ଲଭ୍ୟ ହୋଇଅଛି । ଆଜିକୁ ପ୍ରାୟ ଦଶବର୍ଷ ହେଲା ଉକ୍ତ ପ୍ରକାଶକମଣ୍ଡଳୀ ମହାଭାରତର ମୁଦ୍ରଣ ଆରମ୍ଭ କରି ପର୍ବଶଃ ସମଗ୍ର ପ୍ରକାଶ କଲେ । ଏଥିପାଇଁ ସେମାନେ ଉତ୍କଳର ପାଠକସାଧାରଣଙ୍କର ଅବଶ୍ୟ ପ୍ରଶଂସା ଭାଜନ । ତଥାପି ଅମ୍ଭେମାନେ ଏ ପ୍ରଶଂସାରେ ସମ୍ପୂର୍ଣ୍ଣ ମୁକ୍ତକଣ୍ଠ ନ ହୋଇ କିଞ୍ଚିତ୍ କୁଣ୍ଠକଣ୍ଠ ହେଉଅଛୁଁ । ପ୍ରକାଶକଗଣ ସର୍ବ ପ୍ରଥମେ ଖଣ୍ଡିଏ ପ୍ରାଚୀନ ବରିଷ୍ଠଗ୍ରନ୍ଥ ପ୍ରକାଶ କଲେ, ଏହା ଅବଶ୍ୟ ଅତି ଆନନ୍ଦର କଥା, କିନ୍ତୁ ସେଥିରେ ଥିବା ଦୋଷ ବା ଅଶୁଦ୍ଧିର ନିରାକରଣ ପ୍ରତି ତୀକ୍ଷ୍ଣ ଦୃଷ୍ଟି ନ ରଖି ତାହାକୁ ଭ୍ରମପ୍ରମାଦ ସଙ୍କୁଳ ଏବଂ ସ୍ଥାନେ ପରିବର୍ତ୍ତନାଦିଦ୍ୱାରା ବିକୃତ କରିଅଛନ୍ତି, ଏହା ଅତୀବ ଆକ୍ଷେପର ବିଷୟ । କୋମ୍ପାନୀଙ୍କର ଏ କ୍ରୁଟି ଉପେକ୍ଷଣୀୟ ନୁହେ । ସେ ଯାହା ହେଉ ବର୍ତ୍ତମାନ ଅମ୍ଭେମାନେ ଏହି ନବ ପ୍ରକାଶିତ ମହାଭାରତ ଆଲୋଚନା କରିବା ପୂର୍ବରୁ ବିଜ୍ଞ ପାଠକସାଧାରଣଙ୍କ ନିକଟରେ ଏହି ନିବେଦନ କରୁଅଛୁଁ ଯେ, ସେମାନେ କବିଙ୍କ ପ୍ରତି ଲକ୍ଷ୍ୟ ନ ରଖି ବିଷୟ ପ୍ରତି କେବଳ ତୀକ୍ଷ୍ଣଦୃଷ୍ଟି ରଖିବେ । ବକ୍ଷ୍ୟମାଣ କଥାମାନ କବିଙ୍କର ନିନ୍ଦା ବା ସ୍ତୁତିବାଦ ନୁହେ କିମ୍ବା ପୂଜନୀୟ ପ୍ରାଚୀନ କବିଙ୍କ ପ୍ରତି ଅନାଦର ନୁହେ । ଯାହା ସତ୍ୟ ବା ଯଥାର୍ଥ, କେବଳ ତାହା ଏଥିରେ ଯଥାଶକ୍ତି ପ୍ରକାଶ କରି ଯାଉଅଛି । ତଦ୍ଦ୍ୱାରା ଯଦି କେଉଁଠି କବିଙ୍କର ଯଶୋହାନି ହୁଏ, ତେବେ ତାହା ସତ୍ୟ ଅନୁରୋଧରେ ସହିବାକୁ ହେବ ।

ସର୍ବାଦୌ ଏହ ମହାଭାରତ ସଂସ୍କୃତ ବା ମୂଳ ମହାଭାରତର ପର୍ବାନୁକ୍ରମରେ ସମ୍ପୂର୍ଣ୍ଣ ଲିଖିତ ନୁହେ । ଯେଉଁଠି ପାର୍ଥକ୍ୟ ଲକ୍ଷିତ ହୁଏ, ତାହା ନିମ୍ନୋକ୍ତ ତାଲିକାରେ ପ୍ରକାଶିତ ହେଲା ।

| ସଂସ୍କୃତ | | ଓଡ଼ିଆ | |
|---|---|---|---|
| ୧ | ଆଦିପର୍ବ | ୧ | ଆଦିପର୍ବ |
| ୨ | ସଭାପର୍ବ | ୨ | ମଧ୍ୟପର୍ବ |
| ୩ | ବନପର୍ବ | ୩ | ସଭାପର୍ବ |
| ୪ | ବିରାଟପର୍ବ | ୪ | ବନପର୍ବ |
| ୫ | ଉଦ୍ୟୋଗପର୍ବ | ୫ | ବିରାଟପର୍ବ |
| ୬ | ଭୀଷ୍ମପର୍ବ | ୬ | ଉଦ୍ୟୋଗପର୍ବ |
| ୭ | ଦ୍ରୋଣପର୍ବ | ୭ | ଭୀଷ୍ମପର୍ବ |
| ୮ | କର୍ଣ୍ଣପର୍ବ | ୮ | ଦ୍ରୋଣପର୍ବ |
| ୯ | ଶଲ୍ୟପର୍ବ | ୯ | କର୍ଣ୍ଣପର୍ବ |
| ୧୦ | ସୌପ୍ତିକପର୍ବ | ୧୦ | ଶଲ୍ୟପର୍ବ |
| ୧୧ | ସ୍ତ୍ରୀପର୍ବ | ୧୧ | ଗଦାପର୍ବ |
| ୧୨ | ଶାନ୍ତିପର୍ବ | ୧୨ | କାଇଁଶିକା ବା ଐଷିକପର୍ବ |
| ୧୩ | ଅନୁଶାସନପର୍ବ | ୧୩ | ନାରୀପର୍ବ |
| ୧୪ | ଅଶ୍ୱମେଧପର୍ବ | ୧୪ | ଶାନ୍ତିପର୍ବ |
| ୧୫ | ଆଶ୍ରମିକପର୍ବ | ୧୫ | ଆଶ୍ରମିକପର୍ବ |
| ୧୬ | ମୌଷଳପର୍ବ | ୧୬ | ଅଶ୍ୱମେଧପର୍ବ |
| ୧୭ | ମହାପ୍ରାସ୍ଥାନିକପର୍ବ | ୧୭ | ମୂଷଳୀପର୍ବ |
| ୧୮ | ସ୍ୱର୍ଗାରୋହଣପର୍ବ | ୧୮ | ସ୍ୱର୍ଗାରୋହଣପର୍ବ |

ଉଲ୍ଲିଖିତ ତାଲିକାରୁ ଆମ୍ଭେମାନେ ମୂଳସହିତ ନାମ ଓ କ୍ରମର ଯାହା ପ୍ରଭେଦ ଦେଖୁଅଛୁଁ, କେବଳ ତେତିକ ନୁହେ ।

ପର୍ବ ବର୍ଣ୍ଣିତ ବିଷୟ ଆଲୋଚନା କଲେ ଏଥିରେ ମୂଳ ମହା-ଭାରତର ଯଥେଷ୍ଟ ବ୍ୟତିକ୍ରମ ଦେଖାଯାଏ । ମୂଳ ତୁଳନାରେ ଏଥିର ବର୍ଣ୍ଣନା କାହିଁ ଅତି ସଂକ୍ଷିପ୍ତ, କାହିଁ ବା ଅତି ପ୍ରସାରିତ; କାହିଁ କାହିଁ ପରିବର୍ତ୍ତିତ ଓ କଳ୍ପନା ରଞ୍ଜିତ, କାହିଁ କାହିଁ ବା ସ୍ଥାନାନ୍ତର ନ୍ୟସ୍ତ । କୌତୂହଳ ପରାୟଣ ପାଠକ ସାଧାରଣଙ୍କୁ ନିମ୍ନରେ ତାହାର କିଛିଏ ଆଭାସ ଦେବାକୁ ଚେଷ୍ଟା କରୁଅଛୁଁ ।

୧ ଆଦିପର୍ବ — ସଂସ୍କୃତର ଆଦିପର୍ବ ଏଥିରେ ଆଦ୍ୟ ଓ ମଧ୍ୟ ଦୁଇ ଭାଗରେ ବିଭକ୍ତ । ଅନୁକ୍ରମଣ ବା ଅଂଶାବତରଣ-ଠାରୁ ସ୍ୱୟମ୍ବର ଓ ରାଜ୍ୟଲାଭ ପର୍ଯ୍ୟନ୍ତ ବର୍ଣ୍ଣିତ ବିଷୟ ପ୍ରଥମ ପର୍ବର ଅନ୍ତର୍ଗତ । ଆଦିପର୍ବାନ୍ତର୍ଭୁକ୍ତ ଅର୍ଜୁନ ବନବାସ ସୁଭଦ୍ରା ହରଣ, ଖାଣ୍ଡବଦାହ ଓ ମୟଦର୍ଶନାଦି ମଧ୍ୟପର୍ବର ପ୍ରତିପାଦିତ ବିଷୟ । କବିଙ୍କର ଏହି ଦୁଇଟି ପର୍ବ ଅନ୍ୟାନ୍ୟ ପର୍ବର ଆକାର ତୁଳନାରେ ଅଯଥା ବୃଦ୍ଧି ଲାଭ କରିଅଛି । ତଥାପି ସଂସ୍କୃତ ଆଦିପର୍ବର ସମସ୍ତ ବିଷୟ ଏ ଦୁଇଟିରେ ସ୍ଥାନ ପାଇ ନାହିଁ । ମୂଳ ଗ୍ରନ୍ଥର ଅନେକ ପ୍ରସଙ୍ଗ ଏଥିରେ ପରିତ୍ୟକ୍ତ ଏବଂ କେତେକ ଅବାନ୍ତର କଥା ଅଯଥା ବିସ୍ତୃତ । ଦ୍ରୋଣ-ଜନ୍ମ କର୍ଣ୍ଣଜନ୍ମ ପ୍ରଭୃତି ବର୍ଣ୍ଣନା ବଡ଼ ଅଶ୍ଳୀଳ ଏବଂ ଅପ୍ରାକୃତ । ମୂଳ ଗ୍ରନ୍ଥରେ ଏପ୍ରକାର ବର୍ଣ୍ଣନାର ସତ୍ତା ନାହିଁ । ଭୀମ ଜନ୍ମର ଅଯଥା ବିସ୍ତାର କବିଙ୍କର କପୋଳକଳ୍ପିତ ପରି ବୋଧ ହୁଏ । ଅନେକ ସ୍ଥଳରେ କବି ଏହିପରି ସ୍ୱକପୋଳକଳ୍ପିତ ଗଳ୍ପର ଅବତାରଣା ଦ୍ୱାରା ଏବଂ ଏକଥାକୁ ଭିନ୍ନ ସ୍ଥଳରେ ଭିନ୍ନ ଯୁଗରେ ପୁନଃ ପ୍ରକାଶ କରିବା ଦ୍ୱାରା ଗ୍ରନ୍ଥର ଅଯଥା ବୃଦ୍ଧି କରିଅଛନ୍ତି । ଅଥଚ ଅନେକ ଉଲ୍ଲେଖ ଯୋଗ୍ୟ ବିଷୟ ଏକାବେଳକେ ବର୍ଜନ କରିଅଛନ୍ତି । ଦ୍ରୌପଦୀ ସ୍ୱୟମ୍ବରରେ

ଲକ୍ଷ୍ୟଭେଦର ବର୍ଣ୍ଣନା (୧) କବି କେତେ ବିସ୍ତୃତ ଏବଂ ଅମୂଳକ କରିଅଛନ୍ତି, ତାହା ପାଠକେ ଥରେ ପୁସ୍ତକ ଉଦ୍‌ଘାଟନ କଲେ ଜାଣି ପାରିବେ । ମାତ୍ର ଏ ପ୍ରସଙ୍ଗ ମହାଭାରତରେ ଦୁଇ ତିନୋଟି ଶ୍ଲୋକ ମାତ୍ର । ଧୃଷ୍ଟଦ୍ୟୁମ୍ନ ଉପସ୍ଥିତ ରାଜନ୍ୟ ମଣ୍ଡଳୀଙ୍କ ସମ୍ମୁଖରେ ଜଣାଇଲେ ;—

ଇଦଂ ଧନୁ ର୍ଲକ୍ଷ୍ୟମିମେ ଚ ବାଣାଃ
ଶୃଣ୍ୱନ୍ତୁ ମେ ଭୂପତୟଃ ସମେତାଃ ।
ଛିଦ୍ରେଣ ଯନ୍ତ୍ରସ୍ୟ ସମର୍ପୟଧ୍ୱଂ
ଶରୈଃ ଶିତୈର୍ବ୍ୟୋମଚରୈର୍ଦଶାର୍ଦ୍ଧୈଃ ।
ଏତନ୍ମହତ୍ କର୍ମ କରୋତି ଯୋ ବୈ
କୁଲେନ ରୂପେଣ ବଲେନ ଯୁକ୍ତଃ ।
ତସ୍ୟାଦ୍ୟ ଭାର୍ଯ୍ୟା ଭଗିନୀ ମମେୟଂ
କୃଷ୍ଣା ଭବିତ୍ରୀ ନ ମୃଷା ବ୍ରବୀମି, ଆଃ ପଃ ୮୫ ଅଧ୍ୟାୟ ।

ବଙ୍ଗ କବି କାଶୀରାମ ମଧ୍ୟ ଠିକ୍ ଏହି କଥା ଲେଖିଅଛନ୍ତି (୨) । ଏପ୍ରକାର ପ୍ରସଙ୍ଗ ବ୍ୟତୀତ କବି ପ୍ରତ୍ୟେକ କାଣ୍ଡ ଯାତ୍ରାଦି ଶୁଭାନୁଷ୍ଠାନରେ ଶୁଭଦିନ ତାର ଚନ୍ଦ୍ରାଦିର ଯୋଗ କରିଅଛନ୍ତି, କିନ୍ତୁ ସେ ଗୁଡ଼ିକ ସର୍ବତ୍ର ଜ୍ୟୋତିଷ ଶାସ୍ତ୍ର ସମ୍ମତ ଥିଲା ପରି ବୋଧ ହେଉ ନାହିଁ । ମୂଳ ସହିତ ତାହାର ମେଳ

---

(୧) ଏହି ଦୀର୍ଘ ବର୍ଣ୍ଣନାରୁ ଓଡ଼ିଆଙ୍କ ଲକ୍ଷଣବନ୍ତା ସୁଅଙ୍ଗର ଅବତାରଣା ହୋଇଅଛି ।

(୨) ହେନ ଧନୁ ଲୈଲ ଯାହା କେହ ନାହିଁ ଦେଖେ
ଶୂନ୍ୟେତେ ରହିଲ ଧନୁ ଅସମ୍ଭବ ଲେଖେ ।
ମଧ୍ୟପଥେ ଯନ୍ତ୍ର ଥୁଇଲ ମନ୍ତ୍ର କରିତେ
ପଞ୍ଚଶର ସହ ଧନୁ ଥୁଇଲ ସଭାତେ ।
ଏଇ ଧନୁଃଶରେ ଏଇ ଯନ୍ତ୍ରରନ୍ଧ୍ର ପଥେ ।
ଯେ ବିନ୍ଧିବେ ଲକ୍ଷ୍ୟ କନ୍ୟା ଭଜିବେ ତାହାତେ ।

ନ ଥିବାରୁ ସ୍ୱତଃ ସଂଶୟ ଜନ୍ମେ । ଅଧିକ ଦୃଷ୍ଟାନ୍ତର ପ୍ରୟୋଜନ ନାହିଁ, ଯୁଧିଷ୍ଠିରଙ୍କ ଜନ୍ମ ସ୍ଥଳରେ କବି ଲେଖିଅଛନ୍ତି ;—

ବୈଶାଖ ଶୁକ୍ଳ ପ୍ରତିପଦା ଯେ ଚନ୍ଦ୍ରବାର
କୃତ୍ତିକା ନକ୍ଷତ୍ର ମେଷ ରାଶି ସେ ଦିନର ।
ତୈତିଳ ନାମେ କରଣ ପ୍ରୀତିନାମେ ଯୋଗ
ମେଷ ସଂକ୍ରାନ୍ତିକ ଉଣାଇଶ ଦିନ ଭୋଗ ।
ସମ୍ପୂର୍ଣ୍ଣ ହୋଇଅଛୁ ଯେ ପାତ ଘଡ଼ି ରାତି···ପୃ ୭୮ ।

କିନ୍ତୁ ସଂସ୍କୃତରେ ଏ ସ୍ଥଳରେ କଣ ଅଛି ଦେଖନ୍ତୁ ;—

ଐନ୍ଦ୍ରେ ଚନ୍ଦ୍ରମା ସଂଯୁକ୍ତେ ମୁହୂର୍ତ୍ତେଽଭିଜିତେଷ୍ଟମେ
ଦିବା ମଧ୍ୟଗତେ ସୂର୍ଯ୍ୟେ ତିଥୌ ପୂର୍ଣ୍ଣେଽତିପୂଜିତେ ।
ସମୃଦ୍ଧ ଯଶସଂ କୁନ୍ତୀ ସୁଷାବ ପ୍ରବରଂ ସୁତଂ ।

ଆଃ ପଃ ୧୩ ଅଧ୍ୟାୟ ।

ଅର୍ଥାତ୍ କୁନ୍ତୀ ପୂର୍ଣ୍ଣତିଥି (ପଞ୍ଚମୀ)ରେ ସୂର୍ଯ୍ୟ ମଧ୍ୟଗତ (ତୁଳାରାଶିସ୍ଥ) ଥିବା ସମୟରେ ଦିବସର ଅଷ୍ଟମ ମୁହୂର୍ତ୍ତରେ ଐନ୍ଦ୍ର ବା ଜ୍ୟେଷ୍ଠା ନକ୍ଷତ୍ରରେ ଯଶସ୍ୱୀପୁତ୍ର ପ୍ରସବ କରିଥିଲେ । ମୂଳ କବିଙ୍କର ଆଶ୍ୱିନ ଶୁକ୍ଳପଞ୍ଚମୀ ସ୍ଥଳରେ ଏ କବିଙ୍କର ବୈଶାଖ ଶୁକ୍ଳ ପ୍ରତିପଦା କିପରି ସଙ୍ଗତ ? ଆଉ ସଂସ୍କୃତର ଏହି ଜନ୍ମ ତିଥି ଓ ଯୋଗ ଅତି ଦୁର୍ଲ୍ଲଭ ।

୨ **ସଭାପର୍ବ** ।—ଏହି ପର୍ବରେ ରାଜସୂୟ ପ୍ରସ୍ତାବ, ଯଜ୍ଞାନୁଷ୍ଠାନ, ଜରାସନ୍ଧବଧ, ଭୀମାର୍ଜ୍ଜୁନାଦିଙ୍କର ଦିଗ୍‌ବିଜୟ, ଶିଶୁପାଳବଧ, ଏବଂ ଦ୍ୟୂତକ୍ରୀଡ଼ାଦିର କଥା ବର୍ଣ୍ଣିତ ଅଛି । ଧୃଷ୍ଟରାଜ ଯୁଦ୍ଧ ଓ ଜାନୁଘୋଷ ପ୍ରଭୃତିଙ୍କର ଯୁଦ୍ଧ ବର୍ଣ୍ଣନା ଏବଂ କାମାକ୍ଷୀଙ୍କଠାରୁ ଭୀମର ଅପୂର୍ବ ପାକଶକ୍ତି ଲାଭର ବର୍ଣ୍ଣନା ମୂଳ ଗ୍ରନ୍ଥରେ ଦେଖା ଯାଉ ନାହିଁ । ମାତ୍ର କବିଙ୍କର ଏଥିରେ ବୈଲକ୍ଷଣ୍ୟ ପ୍ରତିବମ୍ବିତ ହୋଇଅଛି । ଏହି ପର୍ବାନ୍ତର୍ଗତ

ଭୀମ ଜରାସନ୍ଧଯୁଦ୍ଧ ବର୍ଣ୍ଣନା ବୀରରସାତ୍ମକ । ପାଠ ସଙ୍ଗେ ଉଦ୍ଦୀପ୍ତ ବୀରର ରୁଦ୍ର ମୂର୍ତ୍ତି ପାଠକର ମାନସ ପ୍ରତ୍ୟକ୍ଷ ହୁଏ । କବିଙ୍କର ଏହି ଜରାସନ୍ଧପୁରର ପ୍ରବେଶ ବର୍ଣ୍ଣନା ମୂଳ ବର୍ଣ୍ଣନାରୁ ଅନେକାଂଶରେ ପୃଥକ୍ । ସଂସ୍କୃତ ସଭାପର୍ବ ଏକବିଂଶ ଅଧ୍ୟାୟର (୧୫ଶ ଠାରୁ ୨୦ଶ) ଶ୍ଳୋକ କତିପୟରୁ ପ୍ରକାଶ ପାଏ ଯେ କୃଷ୍ଣାର୍ଜ୍ଜୁନ ଏବଂ ଭୀମ ପୁର ପ୍ରବେଶ କାଳରେ ପ୍ରଥମେ ଗିରିବ୍ରଜ ଓ ଚୈତ୍ୟକ (ବଡ଼ବୃକ୍ଷ) ଅତିକ୍ରମ କରି ମାଂସାଦ ବୃଷଭର (ଦୈତ୍ୟବିଶେଷ) ଚର୍ମନିର୍ମିତ କଠୋରନାଦୀ ଭେରୀ-ତ୍ରୟକୁ ଖଣ୍ଡ ବିଖଣ୍ଡ କରି ପକାଇଥିଲେ । ତଦନନ୍ତର ପଥ ମଧ୍ୟରେ ଚନ୍ଦନମାଲ୍ୟାର୍ଚ୍ଚିତ ଶୃଙ୍ଗକୁ ଭେଟିଲା କ୍ଷଣି ତାହାକୁ ବିଚୂର୍ଣ୍ଣ କରି ଜରାସନ୍ଧର ହୋମଶାଳା ଅଭିମୁଖରେ ପ୍ରସ୍ଥାନ କଲେ । କିନ୍ତୁ ଏ ସ୍ଥଳରେ କବିଙ୍କର ବର୍ଣ୍ଣନା ଭିନ୍ନ ପ୍ରକାର । ତାହା ଏହି ଯେ, ଶିବଙ୍କଠାରୁ ଜରାସନ୍ଧବଧ ଭେଦ ପାଇଁ କୃଷ୍ଣ, ଅର୍ଜ୍ଜୁନ, ଭୀମ ଓ ସହଦେବ ଗୃହରକଣ ଗୃହ ଦ୍ୱାରରେ ପ୍ରବେଶ କରି ଯଥାକ୍ରମେ ଗର୍ଦ୍ଦଭ, ଶିମୁଳି ଗଛ, ଭେରୀ ଏବଂ ଯୁବରାଜଙ୍କୁ ଅତିକ୍ରମ କରି ଲକ୍ଷ୍ୟ ସ୍ଥାନକୁ ଯାଇଥିଲେ । ଏହି ସ୍ଥଳରେ କୃଷ୍ଣ 'ଗାଧପାଦ ଧରି ଥିବାର' ବର୍ଣ୍ଣନା ଅଛି—ଏବଂ ଏହି କଥା ବର୍ତ୍ତମାନ "ଅସମୟ୍ର ବେଳେ ଗଧପାଦ ଧରିବାକୁ ହୁଏ" ଗୋଟିଏ ଓଡ଼ିଆ ପ୍ରବଚନରେ ପରିଣତ ହୋଇଅଛି ।

**ବନପର୍ବ**—ପାଣ୍ଡବମାନଙ୍କର ଅରଣ୍ୟ ଯାତ୍ରା, କିର୍ମ୍ମୀରବଧ, କିରାତାର୍ଜ୍ଜୁନ ସମ୍ବାଦ, ଅର୍ଜ୍ଜୁନର ଇନ୍ଦ୍ରପୁରୀ ଗମନ, ନଳୋପାଖ୍ୟାନ, ତୀର୍ଥଯାତ୍ରା, ଯକ୍ଷଯୁଦ୍ଧ, ମାର୍କଣ୍ଡେୟ ସମସ୍ୟା, ଦ୍ରୌପଦୀ ସତ୍ୟଭାମା ସମ୍ବାଦ, ଘୋଷଯାତ୍ରା, ଦୁର୍ବାସାଚରିତ, ଜୟଦ୍ରଥକୃତ ଦ୍ରୌପଦୀ ହରଣ, ସୂର୍ଯ୍ୟଙ୍କଠାରୁ କର୍ଣ୍ଣର

କୁଣ୍ଡଳାହରଣ ବୃତ୍ରବଧ ପ୍ରଭୃତି ଏହି ପର୍ବର ବର୍ଣ୍ଣିତ ବିଷୟ । ଏଥି ମଧ୍ୟରୁ ତୀର୍ଥଯାତ୍ରା, ନଳୋପାଖ୍ୟାନ ଏବଂ ଦ୍ରୌପଦୀ ହରଣର ବର୍ଣ୍ଣନା ମୂଳ ତୁଳନାରେ ଅତି ସଂକ୍ଷିପ୍ତ, ଅନେକ ଯଥା ସ୍ଥାନରେ ସନ୍ନିବେଶିତ ନାହିଁ । ତାହା ବ୍ୟତୀତ ମୂଳପର୍ବର ଦୁଇଟି ପ୍ରସିଦ୍ଧ ଚରିତ ଏଥିରେ ବର୍ଣ୍ଣିତ ନାହିଁ । ଯଥା— ସୁକନ୍ୟା ଚରିତ ଏବଂ ସାବିତ୍ରୀ ବୃତ୍ତାନ୍ତ । ମୂଳ ମହାଭାରତର ଦ୍ରୌପଦୀହରଣ ପର୍ବରେ ପ୍ରସଙ୍ଗ ବଶାତ୍ ଅବତାରିତ ରାମାୟଣ ଅଂଶ ଯେପରି ବିଶଦ ଭାବରେ ଅଛି, ଏଥିରେ ସେପରି ନାହିଁ । ଅଥଚ ଏକ ଅଞ୍ଜନା ସମ୍ବାଦ କାହୁଁ ଆଣି ଏତେ ବିସ୍ତୃତ କରିଅଛନ୍ତି । ତାହା କିପରି ସତ୍ୟବର୍ଜ୍ଜିତ, ବିଭତ୍ସ ଏବଂ ଅଶ୍ରୋତବ୍ୟ, ନିମ୍ନୋଦ୍ଧୃତପଂକ୍ତି କତିପୟରୁ ଜଣା ଯିବ ।

ଅହଲ୍ୟା କହିଲେ ଶୁଣ ଦ୍ରୁପଦ ଦୁହିତେ ।
ଅଞ୍ଜନୀ ବସିଲା ଲକ୍ଷେ ବର୍ଷ ପର୍ଯ୍ୟନ୍ତେ ।

ବଢ଼ିଲା ଶରୀର ଚରଣଲେ ଉଇ ପୋକ
ଅସ୍ଥିମାଳ କରୁ ନାହିଁ ହୋଇଲା ବୃଦ୍ଧେକ ।
ଲକ୍ଷେ ବର୍ଷ ପର୍ଯ୍ୟନ୍ତେ ହୋଇଥିଲା ବୃଦ୍ଧା
ଫୁଟି ବାହାର ହେଲା ଶରୀର ହୋଇ ଶୁଦ୍ଧା ।
ନଖ ମୁଖ ନାସିକା ଯେ ଚରଣ ଦୁଇଟି
ବୃଦ୍ଧାରୁ ବାହାର ହେଲା ଶରୀର ଯେ ଗୋଟି
ମହାଡେମ୍ଭ ହେଲା ଯହୁଁ ସେ କନ୍ୟାର କାୟ
ଖଡ଼ଗ ଅଗ୍ନିର ଜଳେ ହୋଇଲା ନିର୍ଭୟ

ଇତ୍ୟାଦି ପୃ ୧୪୩ ।

ଏହି ଅଞ୍ଜନା ସମ୍ବାଦର ଶେଷ ଅଂଶ ଏବଂ ହନୁମାନ ଜନ୍ମ ବଡ଼ ଅଶ୍ଳୀଳ । ଏହିପରି ଅନେକ ସ୍ଥଳର ବର୍ଣ୍ଣନାରୁ କବିଙ୍କର

ଲୋକ ପ୍ରତ୍ୟକ୍ଷ ପ୍ରତି ବିଶେଷରେ ଅସ୍ଥା ବା ଦୃଷ୍ଟି ନ ଥିଲାପରି ଅନୁମାନ ହୁଏ । *

୪ ବିରାଟପର୍ବ—ବିରାଟପୁରରେ ପାଣ୍ଡବଗଣଙ୍କ ଅଜ୍ଞାତ ବାସ, କୀଚକବଧ ଏବଂ ଗୋହରଣ ଏହି କେତୋଟି ବିରାଟପର୍ବର ପ୍ରଧାନ ବର୍ଣ୍ଣିତ ବିଷୟ । ଏହି ପର୍ବରେ କୀଚକ ଦ୍ରୋପଦୀ ଆକ୍ରମଣ ବର୍ଣ୍ଣନା ଯେପରି ଅଶ୍ଳୀଳତାର ଚରମ ସୀମାକୁ ଯାଇଅଛି, ଦ୍ରୋପଦୀଙ୍କର ଭୀମାଦିଙ୍କ ପ୍ରତି ତତ୍କାଳୀନ କର୍କଶ ଭାଷା ମଧ୍ୟ ସେହିପରି ଶିଷ୍ଟତାର ସୀମା ଲଙ୍ଘନ କରିଅଛି— ଅନ୍ତର ମଧ୍ୟ ପାଚକବେଶୀ ଭୀମର ଅକଥା ଅବସ୍ଥା ରଞ୍ଜନ ଏବଂ ଅଲୌକିକ ପରିବେଷଣର ବର୍ଣ୍ଣନା (୧) ସତ୍ୟ ପ୍ରତ୍ୟୟର ଅପଚୟ ସାଧନ କରିଅଛି । ଭୀମର ବଳଷ୍ଠତା ଏବଂ ଔଦ୍ଧତ୍ୟକୁ ଧ୍ୟେନ କରି ଏଥିରେ ବହୁତ ବଢାବଢି କରିଅଛନ୍ତି ;

---

* ଏହି ପର୍ବରେ କବି ସତ୍ୟଅମ୍ବ ଗଛର ଉତ୍ପତ୍ତିସମ୍ବନ୍ଧରେ ଏକ ଅପୂର୍ବ ଗଳ୍ପର କଳ୍ପନା କରିଅଛନ୍ତି । ଚୈତ୍ର ମାସରେ ଅମ୍ବ ନ ମିଳିବାରୁ ଶ୍ରୀକୃଷ୍ଣ ବନବାସୀ ପଞ୍ଚଭ୍ରାତା ଏବଂ ପାଞ୍ଚାଳୀଙ୍କ ଆଗରେ ଗୋଟିଏ ଟାକ୍ସି ପୋତି କହିଲେ ତୁମ୍ଭେମାନେ ଯେ ଯାହାର ସତ୍ୟ ପ୍ରକାଶ କର, ତେବେ ଏ ଅମ୍ବଗଛ ହୋଇ ନିଷ୍ପତ୍ତି ଫଳିବ, ତଦନୁସାରେ ସମସ୍ତେ ଆତ୍ମରହସ୍ୟ ପ୍ରକାଶ କଲେ । ଯୁଧିଷ୍ଠିରଙ୍କ ସତ୍ୟ ପ୍ରକାଶରେ ସେ ବୀଜ ଅଙ୍କୁରିଲା ଏବଂ ଅପର ପାଣ୍ଡବ ଓ ଦ୍ରୌପଦୀଙ୍କ ସତ୍ୟ ପ୍ରକାଶରେ ତାହା ଯଥାକ୍ରମେ ପଲ୍ଲବିତ ଏବଂ ପୁଷ୍ପିତ ହୋଇ – ଗୋଟିଏ ଫଳ ଫଳିଲା ସେହି ଫଳଟିକୁ ପାଣ୍ଡବମାନେ ବିପ୍ରବେଶୀ ଯାଚକ ଶ୍ରୀକୃଷ୍ଣଙ୍କୁ ପ୍ରଦାନ କଲେ । ସେହି ଦିନଠାରୁ ଗଛର ନାମ ସତ୍ୟଅମ୍ବା ହେଲା । ଏହି କଥା ବ୍ୟତୀତ କୁଶ, ଦୁବ, ପାଣ୍ଡୁ ଗନ୍ଧକ ଓ ଶିଂଶପା ବୃକ୍ଷର ଉତ୍ପତ୍ତି ଉପାଖ୍ୟାନ ମଧ୍ୟ ସ୍ୱ କପୋଳ କଳ୍ପିତ ବୋଲି ସ୍ପଷ୍ଟ ପ୍ରତୀତ ହୁଏ ।

(୧) ସଙ୍ଗତରେ ଚଉଷଠୀ କୋଟି ଯୋଦ୍ଧାମାନେ
ସମ୍ପର୍କେ ବସିଲେ ରଜା ମଣୋହି ଅସନେ ।
ସାତକ୍ଷୌଣି ବଳ ଧେନି ବିରାଟ ବସିଲେ
ଭୀମ ନଳ ବଧ ରନ୍ଧଣାକୁ ପରଷିଲେ । ପୃ ୧୪ ।

କ୍ରୁ ଏଣେ କୌରବ କର୍ତ୍ତୃକ ଗୋହରଣ ଏବଂ ଯୁଦ୍ଧାଦିର ବୃତ୍ତାନ୍ତ ମୂଳ ତୁଳନାରେ ଅତି ସଂକ୍ଷିପ୍ତ କରି ପକାଇ ଅଛନ୍ତି ।

୫ ଉଦ୍ୟୋଗପର୍ବ—ସୈନ୍ୟୋଦ୍ୟୋଗ, ସଞ୍ଜୟଯାନ, ପ୍ରଜାଗର (ଧୃତରାଷ୍ଟ୍ର ବିଦୁରସମ୍ବାଦ) ଯାନସନ୍ଧି, ଭଗବାନଙ୍କ ଯାନ, କର୍ଣ୍ଣବିବାଦ, ସୈନ୍ୟନିର୍ଯାଣ, ଅମ୍ବଉପାଖ୍ୟାନ ପ୍ରଭୃତି ଏହି ପର୍ବର ଅନ୍ତର୍ଭୁକ୍ତ ବିଷୟ । ଥିଲେହେଁ କବି ସ୍ୱଗ୍ରନ୍ଥରେ ପ୍ରଜାଗର ଏବଂ ସନତ୍ସୁଜାତ, ମୂଳର ଏହି ଦୁଇଟି ଉପପର୍ବ ଛାଡ଼ିଅଛନ୍ତି । ଏତଦନ୍ତର୍ଗତ ଅମ୍ବା ଉପାଖ୍ୟାନ ଓ ଭୀଷ୍ମ ଦ୍ରୁପଦାଦିଙ୍କର ଇତିହାସକୁ କବି ଆଦିପର୍ବରେ ବର୍ଣ୍ଣନା କରି-ଅଛନ୍ତି ଏବଂ ବନପର୍ବ ଅନ୍ତର୍ଗତ କର୍ଣ୍ଣଙ୍କ କୁଣ୍ଡଳାହରଣ ବୃତ୍ତାନ୍ତକୁ ଏଥିରେ ଯୋଗ କରିଅଛନ୍ତି । ଛଦ୍ମବେଶୀ ଇନ୍ଦ୍ରଙ୍କର ଏହି କୁଣ୍ଡଳ କବଚ ଗ୍ରହଣ ବର୍ଣ୍ଣନା ଏପରି ପ୍ରାଣ-ସ୍ପର୍ଶୀ ଭାଷାରେ ଲିଖିତ ଯେ, ପାଠକାଳରେ ଘନ ଘନ ରୋମାଞ୍ଚ ଜନ୍ମେ । ସୁଦେଷ୍ଣା ମୁଖରୁ ଯୁଦ୍ଧର ଭବିଷ୍ୟତ୍ ପ୍ରସ୍ତାବ ଶ୍ରବଣ ଏବଂ ସ୍ୱପ୍ନବୃତ୍ତ ବର୍ଣ୍ଣନରେ (୧) କବି ସ୍ୱୀୟ ମହୀୟସୀ କଳ୍ପନାର ଖେଳା ପ୍ରଦର୍ଶନ କରିଅଛନ୍ତି ।

୬ ଭୀଷ୍ମପର୍ବ—ଭଗବଦ୍ ଗୀତା ଏବଂ ଭୀଷ୍ମବଧ ଏହି ପର୍ବର ପ୍ରସିଦ୍ଧ ବର୍ଣ୍ଣିତ ବିଷୟ । ଏହାର ଆଦ୍ୟ ଏବଂ ଅନ୍ତରେ କତିପୟ ଅବାନ୍ତର କଥାର ଉଲ୍ଲେଖ ଅଛି । ଏଥିର ଏକ ପର୍ବରେ କବି ଭୀଷ୍ମବଧ ଏବଂ ଦଶ ଦିନର ଶାସ୍ତ୍ରସାର ଯୁଦ୍ଧ ବର୍ଣ୍ଣନାକୁ ଯେପରି ବିସ୍ତୃତ କରିଅଛନ୍ତି ଅନ୍ୟ ସବୁ ଶାସ୍ତ୍ରସାର

(୧) କଳ୍ପବୃକ୍ଷ ଚଢ଼ିବ ଇନ୍ଦ୍ରଦ୍ୟୁମ୍ନ ହୋଇ ।
ପୃଥ୍ୱୀ ବଢ଼ି ନାମେ ଏହା ନାସ ହେବ ମହୀ ।

ଏଠାରେ କବି ନୀଳାଚଳର ପ୍ରତିଷ୍ଠାତା ପ୍ରତି ଲକ୍ଷ୍ୟ ରଖି ଇନ୍ଦ୍ରଦ୍ୟୁମ୍ନ ପଦ୍ମୀ ସୁଧୀ ପଣ୍ଡିତଙ୍କର ପୂର୍ବଜନ୍ମ ସମ୍ବନ୍ଧ ସୂଚନା କରିବାକୁ ଚେଷ୍ଟା କରିଅଛନ୍ତି ।

ଭଗବଦ୍ ଗୀତାକୁ ଯେଉଁପରି ଅତଅସିଦ୍ଧ କରି ପକାଇ ଅଛନ୍ତି । କିନ୍ତୁ ଏହି ଗୀତାରେ ସ୍ଥାନେ୨ କବି ଠିକଏ ମୂଳକୁ ଅନୁସରଣ କରିଅଛନ୍ତି । ଯେଉଁ୨ ସ୍ଥଳରେ ମୂଳ ସହିତ ମେଳ ଅଛି ତଳେ ସେଥିରୁ କେତୋଟି ପାଠକମାନଙ୍କର କୌତୂହଳ ନିବୃତ୍ତିକରଣାର୍ଥେ ଉଦ୍ଧୃତ କରୁଅଛୁଁ ।

୧ ଗୀତା ଦ୍ୱିତୀୟ ଅଧ୍ୟାୟ

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି ଦେହୀ ।
୨୨ ॥

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ । ୨୩ ।

ଓ—ଜୀର୍ଣ୍ଣ ଲୁଗା ଛାଡ଼ି ନୂଆ ପିନ୍ଧିଲା ପରାଏ
ଆତ୍ମା ଯାଇ କରି ପୁଣି ନୂଆ ଦେହ ପାଏ ।
ଆତ୍ମାକୁଟି ଶସ୍ତ୍ର କେବେ ନ ପାରଇ କାଟି
ଅଗ୍ନି ପୋଡ଼ି ନ ପାରନ୍ତି ଆତ୍ମାକୁ କଦାଟି ।
ପଚାଇ ନ ପାରେ ମଧ୍ୟ ତାହାକୁଟି ଜଳ
ଶୁଖାଇ ନ ପାରେ ତାର ଅଣୁଏ ଅନିଳ । ଭୀ ପ; ଦୃ; ୪୩

୨ ଅର୍ଜ୍ଜୁନ ଉବାଚ
ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।
ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିଂ । ୫୪ ।

ଶ୍ରୀଭଗବାନୁବାଚ—
ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍
ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ ।
ଦୁଃଖେଷ୍ୱନୁଦ୍ୱିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ
ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ । ୫୬ ।

ଓ—ଅରଜୁନ ବୋଲେ ତହୁଁ ସ୍ଥିତ ପ୍ରଜ୍ଞ ଲୋକ
ଲକ୍ଷଣ କହ ମୋତେ ହେ ରୁକ୍ମିଣୀ ନାୟକ ।
କିରୂପରେ କହେ ସେହୁ କିରୂପରେ ଥାଏ
କିରୂପେ ବସଇ ସେହୁ କିରୂପେ ବଢାଏ ?
ଶ୍ରୀକୃଷ୍ଣ ବୋଇଲେ ହେ କାମନା ଛାଡ଼ି ଦେଇ
ଯେ ରହଇ ତାହାକୁ ଯେ ସ୍ଥିତପ୍ରଜ୍ଞ କହି ।
ଦୁଃଖରେ ଯେଉଁ ଲୋକ ଉଦ୍ବେଗମନା ନୋହେ
ସୁଖ ଭଲେ ଆଶାକୁ ନ ବୃଢାଏ ମୋହେ ।
ହୃଦୟରୁ ରାଗ ଯେହୁ କରଆଏ ଦୂର
ସ୍ଥିତ ପ୍ରଜ୍ଞ ବୋଲଣ ବୋଲାଏ ସେହୁ ନର ।

ଗୀ ପ ପୁ ୪୫

ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ,
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ । ୬୯

ଓ—ପ୍ରାଣୀଙ୍କି ଯେ ବ୍ରହ୍ମଜ୍ଞାନ ବିଭବସି ପର
ତହିଁରେ ଯୋଗୀଜନ ନୁଅନ୍ତି ଉଜାଗରି ।
ଏଇ ଯେଉଁ ଜାଣ ପ୍ରାଣୀମାନଙ୍କ ଦିବସ
ଯୋଗୀ ଜନମାନଙ୍କୁ ସେ ଅନ୍ଧାର ସଦୃଶ । ପୁ ୭

ତୃତୀୟ ଅଧ୍ୟାୟରେ—ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ
ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଧର୍ମେ ନିଧନଂ ଶ୍ରେୟଃ
ପରଧର୍ମୋ ଭୟାବହଃ । ୩୫ ।

ଓ—ପର ଧରମ ଜାଣିକି ଆପଣାର ଧର୍ମ
ନିଗୁଣ ହେଲେହେଁ ସୁଦ୍ଧା ଅଟଇ ଉତ୍ତମ ।
ସ୍ୱଧର୍ମରେ ମରଣ ଅଟଇ ମଧ୍ୟ ଶ୍ରେୟ
ତେଣୁ ଯୁଦ୍ଧ କର ହେ ଅର୍ଜୁନ କର ଜୟ ।

ପଞ୍ଚମ ଅଧ୍ୟାୟରେ–ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ।
ଓ—ବିଦ୍ୟାବନ୍ତ ଜନ ଯେ ଚଣ୍ଡାଳ ଗାଈ ହାତୀ
କୁକ୍କୁରରେ ସମାନ ଯାହାର ଅଟେ ମତି ।
ତାହାକୁ ଅଟେ ଅର୍ଜ୍ଜୁନ ଜ୍ଞାନୀ ବୋଲି କହୁ
ଆନଠାରେ ସେ କଥା ସମ୍ଭବ ହେବ କାହୁଁ ।
ଦଶମ ଅଧ୍ୟାୟରେ—
ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍
ମରୀଚିର୍ମରୁତାମସ୍ମି ନକ୍ଷତ୍ରାଣାମହଂ ଶଶୀ । ୨ ।
ଦଣ୍ଡୋ ଦମୟତାମସ୍ମି ନୀତିରସ୍ମି ଜିଗୀଷତାଂ
ମୌନଂ ଚୈବାସ୍ମି ଗୁହ୍ୟାନାଂ ଜ୍ଞାନଂ ଜ୍ଞାନବତାମହଂ ।୩
ଓ—ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟରେ ବିଷ୍ଣୁ ମୁହିଁ
ଜ୍ୟୋତିଙ୍କ ମଧ୍ୟରେ ସୂର୍ଯ୍ୟ ଦେବତା ଅଟଇ ।
ତେଜସ୍ୱୀମାନଙ୍କରେ ତେଜ ମୁହିଁ ଅଟଇ
ଜିଣିବା ଲୋକଙ୍କରେ ଜୟଟି ମୋତେ କହି ।
ଗୁପତ କଥାରେ ଅଟେ ମୁଁ ମନ୍ତ୍ର ବଚନ
ମୁହିଁଟି ହେ ଅରଜୁନ ତତ୍ତ୍ୱଜ୍ଞାନ-ଜ୍ଞାନ ।

ଏହିପରି ପ୍ରତି ଅଧ୍ୟାୟର କେବଳ ପ୍ରସିଦ୍ଧ ଶ୍ଳୋକାବଳୀର ଅନୁବାଦ ଥିବାର ଦେଖି ଅନୁମାନ ହୁଏ, କବିଙ୍କର ଯେଉଁ ଶ୍ଳୋକଗୁଡ଼ିକ ସ୍ମରଣାଧୀନ ଥିଲା କେବଳ ସେହିଗୁଡ଼ିକର ଭାବ ସେ ପ୍ରକାଶ କରି ପାରି ଅଛନ୍ତି ।

୭ ଦ୍ରୋଣପର୍ବ—ଏହି ପର୍ବରେ ଦ୍ରୋଣଙ୍କର ଅଭିଷେକ ସଂଶପ୍ତକବଧ, ଅଭିମନ୍ୟୁବଧ, ଅର୍ଜ୍ଜୁନର ଜୟଦ୍ରଥ ବଧ ପ୍ରତିଜ୍ଞା, ଜୟଦ୍ରଥବଧ ଏବଂ ଦ୍ରୋଣବଧ ଏହି ସବୁ ଘଟନା ଯେନି ପଞ୍ଚ ଦିନର ଯୁଦ୍ଧ ବର୍ଣ୍ଣିତ ଅଛି । ସଂସ୍କୃତର ସଂଶପ୍ତକପର୍ବ

ବର୍ଣ୍ଣିତ ବିଷୟ ଏଥିରେ ମ୍ଲେଚ୍ଛ ରାଜାର (୧) ଯୁଦ୍ଧ ବୋଲି ବିସ୍ତୃତ ଭାବରେ ଲକ୍ଷିତ ହୋଇଅଛି । ଅଭିମନ୍ୟୁ ବଧ ବିଶେଷତଃ ଜୟଦ୍ରଥ ବଧ ମୂଳତୁଳନାରେ ଅତି ସଂକ୍ଷିପ୍ତ ହୋଇଥିଲେହେଁ ଏଥିର ବର୍ଣ୍ଣନା ବୀରରସର ସମ୍ପୂର୍ଣ୍ଣ ଉପଯୋଗୀ ହୋଇଅଛି ।

୮ **କର୍ଣ୍ଣପର୍ବ** — ଏଥିରେ ଦୁଃଶାସନ ବଧ ଏବଂ କର୍ଣ୍ଣ ବଧ ଏହି ଦୁଇଟି ପ୍ରଧାନ ଘଟନାକୁ ନେଇ ଅଢ଼େଇ ଦିନର ଯୁଦ୍ଧ ବର୍ଣ୍ଣିତ ଅଛି । ଏ ଉଭୟ ପର୍ବର ବିଷୟ ଯେପରି ଚିତ୍ତାକର୍ଷକ ଏବଂ ବୀରରସାତ୍ମକ, ଭାଷା ତାଦୃଶ ଉପଯୋଗିନୀ ଏବଂ ଓଜସ୍ୱିନୀ ଥିବାରୁ ଅନ୍ୟାନ୍ୟ ପର୍ବ ଅପେକ୍ଷା ଏ ଦୁଇଟି ମାର୍ଜିତ ଏବଂ ଦୋଷ ବର୍ଜିତ । ତେଣୁ ଏହି ଦୁଇ ପର୍ବରୁ ଗୋଟିଏ ଉତ୍କୃଷ୍ଟ ଚିତ୍ର ନେଇ ଆଧୁନିକ କବିମାନେ କାବ୍ୟାଦି ରଚନା କରିଅଛନ୍ତି । (୨) ତଥାପି ଏଥିରେ ବେଣୀ ସଂହାର ସ୍ଥଳରେ ଦ୍ରୌପଦୀଙ୍କର ଭୀମାହ୍ୱାନ ଏବଂ ଶୃଙ୍ଗାର ଚିତ୍ର ଅତୀବ ଅଶ୍ଳୀଳତାବ୍ୟଞ୍ଜକ ।

୯ **ଶଲ୍ୟପର୍ବ** — ପୂର୍ବୋକ୍ତ ପର୍ବମାନଙ୍କରେ ମହାଭାରତର ଅଠର ଦିନ ଯୁଦ୍ଧରୁ ସାଢ଼େ ସତର ଦିନର ଯୁଦ୍ଧର ବର୍ଣ୍ଣନା ଯାଇଅଛି, ଅବଶିଷ୍ଟ ଅର୍ଦ୍ଧଦିନର ଯୁଦ୍ଧ ବର୍ଣ୍ଣନା ଏହି ପର୍ବରେ ଶେଷ ହୋଇଅଛି । ଫଳତଃ ମହାଭାରତୀୟ ମହା ସମରାନଳର (୩) ଏଠାରୁ ପ୍ରଶମ ହେଲା । ସହଦେବକୃତ ଶକୁନି ବଧ,

---

[୧] ଅବଳନା ମ୍ଲେଚ୍ଛଦେଶ ରଜାର ସଇନା ।
କଳନ୍ଦର ବ୍ୟୂହେ ରଣ କଲେ ଫାଲଗୁନ । ପୃ ୧୮ ।

[୨] ସୁପ୍ରସିଦ୍ଧ ଭକ୍ତ ଓ ରାଓ ବଡଙ୍କ ବେଣୀ ସଂହାର ଓ କର୍ଣ୍ଣ ବଧ, ଅନ୍ୟାନ୍ୟ କବିଙ୍କ 'ଜୟଦ୍ରଥ ବଧ' ଓ ଅଭିମନ୍ୟୁ ବଧ ।

[୩] ଯୁଧିଷ୍ଠିର ବୋଲେ ମାମୁଁ ଜଳନ୍ତ ଜଳନ୍ତ
ଜଳୁ ଜଳୁ, ବୋଲି କଲୁ ଶଲ୍ୟ ନିଧନ । ଶ; ପଃ ପୃ ୮ ।

ଯୁଧିଷ୍ଠିରଙ୍କ ପ୍ରହାର କରୁ କରୁ ଶଲ୍ୟର ଦାହ ଓ ମୃତ୍ୟୁ ଏବଂ ଗଦା ଯୁଦ୍ଧରେ ଭୀମ କର୍ତ୍ତୃକ ଦୁର୍ଯ୍ୟୋଧନର ଉରୁଭଙ୍ଗ ଏହି ପର୍ବର ଅଙ୍ଗୀଭୂତ ହେଲେହେଁ କବି ଶେଷୋକ୍ତ ବର୍ଣ୍ଣନାହି ଏପର୍ବରେ ସମ୍ପୂର୍ଣ୍ଣ ପ୍ରକାଶ କରି କେବଳ ଭୀମ ଦୁର୍ଯ୍ୟୋଧନ-ଙ୍କର ଗଦାଯୁଦ୍ଧକୁ ଅବଲମ୍ବନ କରି ଗୋଟିଏ ସ୍ୱତନ୍ତ୍ର ପର୍ବ ( ଗଦାପର୍ବ ) କରିଅଛନ୍ତି । ସେହି ଗଦାପର୍ବରେ ରସସ୍ଥରପର ମାତ୍ରା ଅଧିକ । ଦକ୍ଷଯଜ୍ଞ-ବର୍ଣ୍ଣନାରେ ଶିବଲିଙ୍ଗ ପ୍ରଦର୍ଶନାଦି ଅତି ଅଶ୍ଳୀଳ ଏବଂ ଗ୍ରାମ୍ୟ ହୋଇ ପଡ଼ିଅଛି ।

୧୦ ସୌପ୍ତିକପର୍ବ — ସଂସ୍କୃତ ସୌପ୍ତିକ ପର୍ବର ଅନ୍ତର୍ଗତ କେବଳ ଐଷିକ ପର୍ବର ଘଟଣାକୁ ଘେନି କବି କାହିଁକି ପର୍ବ ରଚନା କରିଅଛନ୍ତି । କୃପାଚାର୍ଯ୍ୟଙ୍କ ମୁଖରୁ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଶସ୍ତ୍ର ହରଣ ସମ୍ବାଦ ପାଇ ଅଶ୍ୱତ୍ଥାମା କୋପରେ କାଇଁଶ ଗଛରେ ଧନୁର୍ବାଣ ନିର୍ମାଣ କରି ଉତ୍ତରା ଗର୍ଭକୁ ଲକ୍ଷ୍ୟକରି ବ୍ରହ୍ମଶର ପ୍ରେରଣ କରିଥିଲେ ବୋଲି ଏହି ପର୍ବର ଏପରି ନାମକରଣ ହୋଇଅଛି ।

୧୧ ନାରୀପର୍ବ — ଏ ପର୍ବରେ ସଂସ୍କୃତର ଜଳପ୍ରାଦାନିକ ପର୍ବ ସମ୍ପୂର୍ଣ୍ଣରୂପେ ବର୍ଣ୍ଣିତ ହୋଇ ନାହିଁ । ଦ୍ୱାରକାରୁ କୃଷ୍ଣଙ୍କର ଇନ୍ଦ୍ରପ୍ରସ୍ଥାଗମନ, ଗାନ୍ଧାରୀଙ୍କ ଅଙ୍କମୂଳ କାତନ୍ତେ ପୁତ୍ର ଦୁର୍ଦ୍ଧଷର ଭସ୍ମୀଭବନ । ଧୃତରାଷ୍ଟ୍ରଙ୍କର ଅଯୁଗୀ ଭୀମ ପ୍ରତିମା ଭଙ୍ଗ, କୌରବ ରମଣୀମାନଙ୍କର ବିଳାପ ଓ କୁରୁକ୍ଷେତ୍ର ଦର୍ଶନ ଏବଂ ଗାନ୍ଧାରୀ ଭୀମ ସମ୍ବାଦ ଅତି କୌତୁକାବହ ଭାଷାରେ ବର୍ଣ୍ଣିତ ହୋଇଅଛି ।

୧୨ ଶାନ୍ତିପର୍ବ—ଏଥିରେ ଶାନ୍ତିପର୍ବର ସତ୍ତା ନାହିଁ କହିଲେ ଚଳେ । କାରଣ ସଂସ୍କୃତ ମହାଭାରତର ଯେଉଁ ପର୍ବଟି ସର୍ବାପେକ୍ଷା ବୃହତ୍ ; ଆକାରରେ ବନପର୍ବର ପ୍ରାୟ ଦୁଇ ଗୁଣ

ଏବଂ ଯାହା ସୁଦୀର୍ଘତର ୩୬୫ ଅଧ୍ୟାୟରେ ସମାପ୍ତ ହୋଇଅଛି ତାହାକୁ କବି ଅଧ୍ୟାକର ପାଠରେ ଶେଷ କରି ଦେଇଅଛନ୍ତି । ତଦନ୍ତର୍ଗତ ରାଜଧର୍ମ, ଆପଦ୍ଧର୍ମ ଏବଂ ମୋକ୍ଷଧର୍ମ ଏହି ତିନି ସୁଦୀର୍ଘ ଉପପର୍ବ ମଧ୍ୟରୁ ଏଥିରେ କେବଳ ପ୍ରଥମଟିର କିଞ୍ଚିତ୍ ଆଭାସ ଅଛି । ଯୁଧିଷ୍ଠିରଙ୍କ ପ୍ରତି ଭୀଷ୍ମଙ୍କର ନାନା ଉପଦେଶ, ଭୀଷ୍ମଙ୍କର ସ୍ୱେଚ୍ଛାମୃତ୍ୟୁ ଏବଂ ମହୋଦଧି କୂଳରେ ତାଙ୍କର ଶବଦାହ ଆଉ ଯୁଧିଷ୍ଠିରଙ୍କର ଅଭିଷେକ ଏହି କେତୋଟି ଘଟନା କବି ବର୍ଣ୍ଣନ କରିଅଛନ୍ତି । କିନ୍ତୁ ମହାସମରାନଳ ନିର୍ବାଣଜନିତ ଅବସରରେ ଏବଂ ମରଣର ପୂର୍ବାଂଶରେ ପ୍ରବୀଣ ବୃଦ୍ଧ ଏବଂ ମହାଜ୍ଞାନୀ ଭୀଷ୍ମଙ୍କ ମୁଖରୁ କେତେ ଯେ ଆଶ୍ରମଧର୍ମାଦିର କଥା, ଅସଂଖ୍ୟ ଉପାଖ୍ୟାନ ଏବଂ ନାନା ଗୀତା ବା ତତ୍ତ୍ୱ ଶାସ୍ତ୍ରର କଥା ବାହାରିବା ଯେ ସ୍ୱାଭାବିକ, ତତ୍ପ୍ରତି କବି ଆଦୌ ଦୃଷ୍ଟି ଦେଇ ନାହାନ୍ତି । ଫଳତଃ ଯେଉଁ ପର୍ବର ବିଷୟ ବୈଚିତ୍ର୍ୟରେ ସମଗ୍ର ମହାଭାରତ ବୈଚିତ୍ର୍ୟମୟ, ଏ କବି ତାହାର ଗାମ୍ଭୀର୍ଯ୍ୟ ଏବଂ ମହତ୍ତ୍ୱ ଏକାବେଳକେ ନଷ୍ଟ କରି ପକାଇ ଅଛନ୍ତି ।

୧୩ **ଅନୁଶାସନପର୍ବ**—ଏ ପର୍ବଟି ଓଡ଼ିଆରେ ଏକାବେଳକେ ନାହିଁ । ସଂସ୍କୃତର ଏହି ପର୍ବରେ ନାନା ସଂବାଦ (ପ୍ରଶ୍ନୋତ୍ତର), ନିନ୍ଦା ପ୍ରଶଂସା ଏବଂ ଉପଦେଶ ଅଛି । ଏହାର ୧୬୮ ଅଧ୍ୟାୟ ମଧ୍ୟରୁ ଦୁଇ ତିନି ଅଧ୍ୟାୟର (ବିଶ୍ୱାମିତ୍ର କଥା) ବିଷୟ ଓଡ଼ିଆ ଐଷିକ ପର୍ବରେ ଏବଂ କେତେକ ଶାନ୍ତି ପର୍ବରେ ଭୁକ୍ତ କରି ହୋଇଅଛି । ଶାନ୍ତି ପର୍ବପରି ଏଥିର ପ୍ରତିପାଦିତ ବିଷୟ କେବଳ ଉପାଖ୍ୟାନ ଶ୍ରେଣୀୟ ନ ଥିବାରୁ କବି ଏହି ଉଭୟରେ କୃତିତ୍ୱ ଦେଖାଇ ପାରି ନାହାନ୍ତି ।

୧୪ ଅଶ୍ୱମେଧପର୍ବ—ଓଡ଼ିଆରେ ଏହି ପର୍ବଟି ଆଶ୍ରମିକ (୧୫ଶ) ପର୍ବର ପରବର୍ତ୍ତୀ ହୋଇଅଛି । ଏ କ୍ରମଭଙ୍ଗ ଅବଶ୍ୟ କବିଙ୍କର ନୁହେ ପ୍ରକାଶକଙ୍କର । କବି ମୂଳଅନୁକ୍ରମେ ଅଶ୍ୱମେଧରେ କୃଷ୍ଣାଦିଙ୍କର ନିମନ୍ତ୍ରଣ ଏବଂ ଆଶ୍ରମିକରେ ଯଦୁବଂଶ ଧ୍ୱଂସ ଓ କୃଷ୍ଣଙ୍କର ଦେହ ତ୍ୟାଗ ବର୍ଣ୍ଣନା କରି ଅଛନ୍ତି । ମୂଷଳ ଉତ୍ପତ୍ତି ଏବଂ ଶ୍ରୀକୃଷ୍ଣଙ୍କର ସ୍ୱର୍ଗମନ ମୂଷଳ ପର୍ବର ଅନ୍ତର୍ଗତ ହେଲେହେଁ କବି ଏ ପର୍ବରେ ମଧ୍ୟ ସେଥିରେ ଏକ ଅପୂର୍ବ କାହାଣୀ ପ୍ରକାଶ କରିଅଛନ୍ତି, ତାହା ଏହି ଯେ, ଋଷି ଶାପରୁ ଯେଉଁ ଲୌହ ମୂଷଳ ଜାତ ହୋଇ ଥିଲା, ତାହାକୁ ସମସ୍ତେ ନେଇ ମହୋଦଧି କୂଳସ୍ଥ ନୀଳଗିରି ଉପରେ ଘୋରିଲେ, ଶେଷରେ ଭୀମ ଘୋରି (୧) ଗିରି ସୁଦ୍ଧା ସରି ଗଲା, ତଥାପି କିଛି ଅବଶେଷ ରହିବାର ଦେଖି ସମୁଦ୍ରକୁ ଫିଙ୍ଗି ଦେଲେ ଏବଂ ତତ୍‌କ୍ଷଣାତ୍ ତାକୁ ଗୋଟିଏ ମତ୍ସ୍ୟ ଗିଳି ଦେଲା । ବେଣ୍ଟପୁରର କୁଞ୍ଜରା କେଉଟ ସେହି ମାଛକୁ ଧରି ଆଣି ଜାରାଶବରକୁ ଦେଲା । ଶବର ଗୃହିଣୀ ମାଛ ପେଟରୁ ସେ ଲୌହ ଶସ୍ତ୍ର ପାଇ ସ୍ୱାମୀକୁ ଦିଅନ୍ତେ, ଜାରା (୨)

---

(୧) କ୍ଷୀର ସିନ୍ଧୁ ତଟେ ନୀଳ ନାମେଣ ଯେ ଗିରି,
ଦଶାଶତେ ଯୋଜନ ଯେ ବିସ୍ତାର ତାହାରି ।
ତହିଁରେ ଲାଗଇ ଦେବକଳ୍ପବଟ ଛାଇ,
ତାପରେ ମୁଁ ସେ ଲୁହାକୁ ଘୋରିଲି ନଠାଇ ।
ଏଗାର ବରଷେ ସେହି ଲୁହା ଯେ ଛଣ୍ଡିବ,
ହେ ନୀଳ ପର୍ବତ ଭୂମି ସମାନ ହୋଇବ । ଅ ପ ମୂ ୪ ।

ନୀଳାଚଳର ନାମ ଏବଂ ଦାରୁବ୍ରହ୍ମ ଉତ୍ପତ୍ତି ସମ୍ବନ୍ଧରେ କବି ଏଠାରେ ଏକ ଅପୂର୍ବ ସମର୍ଥନ କରିଅଛନ୍ତି । ମୂଷଳୀ ପର୍ବର ୩୧ ପୃଷ୍ଠା ପାଠ କଲେ ପାଠକେ ଜାଣି ପାରିବେ ।

(୨) ଏହି କଳିଶବରର ବଂଶଧରମାନେ ଦଇତା ନାମରେ ଆଖ୍ୟାତ ବୋଲି କବି ପ୍ରକାଶ କରିଅଛନ୍ତି ।

ତାହାଁରେ ନାରାଚ ତିଆରି କରି ବନରେ ଭ୍ରମଣ କରୁଥିବା ବେଳେ ଶିଆଳିଲତାରେ ଶୋଇଥିବା ଶ୍ରୀକୃଷ୍ଣଙ୍କ ମୃଗ ମଣି ବାମ ପାଦକୁ ଲକ୍ଷ୍ୟ କରିଥିଲା ଏବଂ ସେଥିରେ ଶରବିଦ୍ଧ ଶ୍ରୀକୃଷ୍ଣ ଜ୍ୟୋତିର୍ମୟ ରଥରେ ସ୍ୱର୍ଗ ପ୍ରସ୍ଥାନ କରିଥିଲେ । କିନ୍ତୁ ମୂଳଗ୍ରନ୍ଥରେ ଠିକ୍ ଏପରି ନାହିଁ । ଜାରା ଧନୁଶର ଘେନି ଭ୍ରମଣ କରୁଥିବାବେଳେ ହଠାତ୍ ବନମଧ୍ୟରେ ଯୋଗାସନସ୍ଥ ପୀତାମ୍ବର କୃଷ୍ଣଙ୍କୁ ଦେଖି ମୃଗଭ୍ରମରେ ଶର ସନ୍ଧାନ କଲା ଏବଂ ସଦ୍ୟ ନିଜକୁ ମହାଅପରାଧୀ ଜାଣି ଶ୍ରୀକୃଷ୍ଣଙ୍କ ପାଦତଳ ଧରି ବହୁ ଅନୁନୟ ବିନୟ କଲା (୩) ।

**୧୬ ମୌଷଳପର୍ବ**—ମୁଷଳୀ ପର୍ବରେ ପାନାସକ୍ତ ଯାଦବମାନଙ୍କର ପରସ୍ପର ଯୁଦ୍ଧ ଓ ମୃତ୍ୟୁ, ପରିଶେଷରେ ରାମକୃଷ୍ଣଙ୍କ ସ୍ୱର୍ଗମନ, ଅର୍ଜୁନଙ୍କର ଯାଦବୀମାନଙ୍କ ସହିତ କୃଷ୍ଣାଭିଗମନ ଏବଂ ଶୋକୋଚ୍ଛ୍ୱାସାଦି ବର୍ଣ୍ଣିତ ହୋଇଅଛି ।

**୧୭ ମହାପ୍ରାସ୍ଥାନିକପର୍ବ**—ଓଡ଼ିଆରେ ଏହି ପର୍ବ ନାହିଁ । ତହିଁର ବିଷୟ ଅଥବା ପାଣ୍ଡବମାନଙ୍କର ମହାପ୍ରସ୍ଥାନ, ହିମାଳୟାରୋହଣରେ ଦ୍ରୌପଦୀ ପ୍ରଭୃତିଙ୍କର ପତନ ଏବଂ ଯୁଧିଷ୍ଠିରଙ୍କର ସ୍ୱର୍ଗାରୋହଣ ଏ ଘଟନା ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣିତ ଅଛି । ଏହି ବର୍ଣ୍ଣନା ବ୍ୟତୀତ କବି ଶେଷୋକ୍ତ ପର୍ବରେ ଅନେକ ଅମୂଳକ କଥାର ଯୋଜନା କରିଅଛନ୍ତି । ବିଶେଷତଃ ଯାଜପୁର ଅଞ୍ଚଳ ବାସୀ ବୈଶ୍ୟ ହରି ସାହୁର କନ୍ୟାସହିତ ଯୁଧି-

---

(୩) ଜରାଥ ତଂ ଦେଶ ମୁପାଜଗାମ ଲୁବ୍ଧସ୍ତଦାନୀଂ ମୃଗଲିପ୍ସୁରୁଗ୍ରଃ ।
ସ କେଶବ ଯୋଗଯୁକ୍ତଂ ଶୟାନଂ ମୃଗାଶଙ୍କୀ ଲୁବ୍ଧକଃ ସାୟକେନ ॥
ଜଘାନ ପାଦତଳେ ତ୍ୱରାବାଂସ୍ତଂ ଚାଭିତସ୍ତଜ୍ଜିଘୃକ୍ଷୁର୍ଜଗାମ ।
ମତ୍ୱାତ୍ମାନଂ ତ୍ୱପରାଦ୍ଧଂ ସ ତସ୍ୟ ପାଦୌ ଜଗ୍ରାହ ଶଙ୍କିତାତ୍ମା ॥
ମୌ ୪ର୍ଥ ଅ:

ଷ୍ଠିରଙ୍କର ବ୍ୟାସାଦି ମହର୍ଷିଗଣଙ୍କ ସମ୍ମୁଖରେ ବିବାହ ପ୍ରସ୍ତାବ (୧) ଅତ୍ୟନ୍ତ ଅସତ୍ୟ ଏବଂ ଅସଙ୍ଗତ । ସ୍ୱର୍ଗାରୋହଣ-ପର୍ବର ଏହି କେତେକ ଅଂଶ ପ୍ରକ୍ଷିପ୍ତ ଥିବାର ଏଥିପୂର୍ବେ ସପ୍ରମାଣ କରାଯାଇଅଛି, ଅଉ ଯାହାଥାଉ ଏଥିରେ ସଂସ୍କୃତ ସ୍ୱର୍ଗାରୋହଣ ପର୍ବ (୧୮ ଶ) ର ବର୍ଣ୍ଣିତ ବିଷୟ ଅର୍ଥାତ୍ ସ୍ୱର୍ଗରେ ନାରଦ ଯୁଧିଷ୍ଠିର ସମ୍ବାଦ, ଯୁଧିଷ୍ଠିରଙ୍କର ନରକ ଦର୍ଶନ ଓ ଅର୍ଜୁନାଦିଙ୍କର ଦର୍ଶନ ଏଥିରେ ବର୍ଣ୍ଣିତ ନାହିଁ ।

**ଭାଷା ଓ ଭାବ ।**

ଏ ପର୍ଯ୍ୟନ୍ତ ଅମ୍ଭେମାନେ ମହାଭାରତର ପ୍ରତିପର୍ବ ପ୍ରତିପାଦିତ ବିଷୟର ସଂକ୍ଷିପ୍ତ ଆଲୋଚନା କରି-ଆସିଲୁଁ । ବର୍ତ୍ତମାନ ଗ୍ରନ୍ଥର ଭାଷା ଓ ଭାବ ସମ୍ବନ୍ଧରେ ସଂକ୍ଷେପରେ କିଛି କହିବାକୁ ଚେଷ୍ଟା କରିବୁଁ । ଏହି ବିଷୟର ଆଲୋଚନା ପୂର୍ବରୁ ଅମ୍ଭେମାନେ ମହାଭାରତକୁ ଭାବ ଓ ଭାଷା ଦୃଷ୍ଟିରେ ତିନୋଟି ଭାଗରେ ବିଭକ୍ତ କରୁଅଛୁଁ । ପ୍ରଥମ ଭାଗରେ ଆଦିପର୍ବଠାରୁ ବିରାଟ ପର୍ବ ପର୍ଯ୍ୟନ୍ତ ପାଞ୍ଚୋଟି ପର୍ବ, ଦ୍ୱିତୀୟଭାଗରେ ଉଦ୍ୟୋଗ ପର୍ବଠାରୁ ଶଲ୍ୟପର୍ବ ପର୍ଯ୍ୟନ୍ତ ୫ ପର୍ବ ଏବଂ ତୃତୀୟ ଭାଗରେ ଅବଶିଷ୍ଟ ପର୍ବଗୁଡ଼ିକ ରହିବା ଉକ୍ତ ଦୃଷ୍ଟିରେ ସଙ୍ଗତ ବିବେଚନା କରୁଅଛୁଁ ।

ଦେହିନୋଽସ୍ମିନ୍ ଯଥାଦେହେ କୌମାରଂ ଯୌବନଂ ଜରା ।
ତଥାଏ ଭାରତେ ଗ୍ରନ୍ଥେ ତ୍ରେଧେଽହମବସ୍ଥାଏମ୍ବଂ ।

---

(୧) ସିଂହାଣୀ କନ୍ୟାକୁ ବରି ହେଲେ ଧର୍ମସୁତ,
ରହିଲେ ସେ ପଞ୍ଚସ୍ତର ବର୍ଷ ପରଯନ୍ତ ।
ପଶ୍ଚିତେ ରାଜ୍ୟ ଦେଲେ ପାଳନ କରନ୍ତି,
ପଞ୍ଚ କଟକର ମଧ୍ୟେ ଏକା ଅଧିବାସୀ — ସ୍ୱ, ପ. ପୃ ୮ ।

ଏହି ସମସ୍ତ ମଧ୍ୟରେ ଭୀମଙ୍କର ଧାନ ଭାର ଆଣିବା ଏବଂ ବାଘ ଯୋଡ଼ ବେଙ୍ଗଳା ପକାଇବା ଆଉ 'ସିହାଣୀ'ଙ୍କର କନ୍ଦାଗଡ଼ରେ ଅବସ୍ଥାନ ଇତ୍ୟାଦି ପ୍ରକାର ବର୍ଣ୍ଣନା ବଡ଼ ଅମୂଳକ ଓ ଘୃଣା ବ୍ୟଞ୍ଜକ ।

ଯଥାର୍ଥରେ ଉଲ୍ଲିଖିତ ତିନଭାଗରେ ବାଲ୍ୟ, ଯୌବନ ଓ ବାର୍ଦ୍ଧକ୍ୟର ବୈଶିଷ୍ଟ୍ୟ ପ୍ରତ୍ୟକ୍ଷ କରାଯାଏ ।

ଦେଖାଯାଏ ବାଳକ ସଦା ଚଞ୍ଚଳ, ଅସ୍ପଷ୍ଟଭାଷୀ ଏବଂ କଳ୍ପିତ ଗଳ୍ପପ୍ରିୟ । ଅଧିକନ୍ତୁ ଶିଶୁ ସଦା ଉଲଗ୍ନ ଥାଇ ନିର୍ବି-କାର ଭାବରେ ଅଶ୍ଳୀଳତାକୁ ଅଙ୍ଗୀଭୂତ କରିଥାଏ ଏବଂ ଯାହା ଇଚ୍ଛା ତାହା ବିଚାର ନ କରି କରେ । ଯେଉଁମାନେ ଏହି ମହାଭାରତର ପ୍ରଥମ ଭାଗ ପାଠକରିବେ, ସେମାନେ ଦେଖିପାରିବେ ଯେ ଏଥିରେ ଉକ୍ତ ବାଲ୍ୟ ସୁଲଭ କ୍ରିୟାଗୁଡ଼ିକ ଅଛି, ଏଥିର ଭାଷା ଯେପରି ଶୃଙ୍ଖଳା ନିବନ୍ଧନ ଅସ୍ପଷ୍ଟ ବା ଅବୋଧ ଓ ଗ୍ରାମ୍ୟ ବର୍ଣ୍ଣନା ତାଦୃଶ ଅଶ୍ଳୀଳ ଏବଂ ଲେଖା ବା ଲିଖିତ ବିଷୟ ସେହିପରି ବିଚାରଶୂନ୍ୟ ଓ ଅସଙ୍ଗତ ।

ଯୌବନ ଉପସ୍ଥିତ ହେଲେ ଲୋକର ଯେପରି ସମଗ୍ର ଜୀବନର ଶକ୍ତି ନବୀନ ଭାବରେ ବିକଶିତ ହୁଏ, ହୃଦୟରେ ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟାଦିର ସଞ୍ଚାର ହୁଏ; ଏହାର ଦ୍ୱିତୀୟ-ଭାଗରେ ସେହିପରି ଯୌବନ ସୁଲଭଗୁଣ ପ୍ରତିଫଳିତ ହୋଇ-ଅଛି । ଏହି ଅଂଶର ଭାବ ଯେପରି ମାର୍ଜିତ ଏବଂ ବିଷୟ ବୀରରସରେ ଊର୍ଜସ୍ୱଳ, ଭାଷା ମଧ୍ୟ ସେହିପରି ଓଜସ୍ୱିନୀ । ଯଥାର୍ଥରେ କବିଙ୍କର ପ୍ରତିଭା ଏହି ଅଂଶରେ ପୂର୍ଣ୍ଣ ବିକାଶ ପ୍ରାପ୍ତ ହୋଇଅଛି ।

ବାର୍ଦ୍ଧକ୍ୟରେ ମନୁଷ୍ୟର ସମସ୍ତ ଶକ୍ତି ହ୍ରାସ ପ୍ରାପ୍ତ ହୁଏ ଏବଂ ସ୍ନେହ ଧର୍ମରେ ମତି ଦୃଢ଼ୀଭୂତ ହୋଉଥାଏ; ଅଧିକନ୍ତୁ ଶରୀର ଜରାବ୍ୟାଧିରେ ଜୀର୍ଣ୍ଣରୁ ଜୀର୍ଣ୍ଣତର ହେବାକୁ ବସେ, ନିତ୍ୟ-ନୈମିତ୍ତିକ କୌଣସି ବିଷୟରେ ଦୃଢ଼ତା ରହେ ନାହିଁ । ମହାଭାରତର ପ୍ରୋକ୍ତ ତୃତୀୟ ଭାଗରେ ଅମ୍ଭେମାନେ ଉଲ୍ଲି-ଖିତ ଅବସ୍ଥା ପ୍ରତ୍ୟକ୍ଷ କରୁଁ । ଏଥିରେ ଭାଷାର ଓଜଃ ନାହିଁ

କ ବିଷୟର ପୂର୍ଣ୍ଣତା ନାହିଁ କମ୍ବା ଲେଖାର କୌଣସି କ୍ରମ ନାହିଁ । ଅଛି କେବଳ ବାର୍ଦ୍ଧକ୍ୟୋଚିତ କେତେକ ଧର୍ମ କଥା । ଅଶ୍ଳୀଳତାଦ୍ୱାରା ତାହାର ମଧ୍ୟ ସ୍ଥଳେ ସ୍ଥଳେ ସ୍ଖଳନ ଘଟିଅଛି । ଲେଖାରୁ ଲେଖକଙ୍କୁ ଜାଣିବାକୁ ହେଲେ ପାଠକ ଅନାୟାସରେ ଏହା କହିବାକୁ ସମର୍ଥ ହେବେ ଯେ, ଏହି ବିଭିନ୍ନ ବିଭାଗର ଲେଖକ ଭିନ୍ନ ଭିନ୍ନ, ସେ ଯାହାହେଉ ଛୂଳରେ ଏତିକି କୁହାଯାଇ ପାରେ ଯେ, ପ୍ରାଚୀନ କବି-ମାନଙ୍କ ଭାଷାମଧ୍ୟରେ ଶାରଳାଦାସଙ୍କର ଭାଷା ଓଜସ୍ୱିନୀ । ତାଙ୍କର ବୀର-ରସର ଭାଷା ଆଧୁନିକ କବିଙ୍କ ତାଦୃଶ ଭାଷା ଅପେକ୍ଷା କୌଣସି ଅଂଶରେ ହୀନ ନୁହେ । ସେ ଭାଷା ବହୁ ଶତବର୍ଷ ପୂର୍ବର ହେଲେହେଁ ଅନେକ ସ୍ଥଳରେ ଅବିକଳ ଆଧୁନିକ ଭାଷାପ୍ରାୟ ଜଣାଯାଏ । ଏଠାରେ ଆଉ ସେଥିର ଆଲୋଚନା ନ କରି, ଆଦି କବିଙ୍କ ଭାଷା ସହିତ ଆଧୁନିକ କବିଙ୍କର ଭାଷାର କିପରି ମେଳ ଅଛି ତାହାର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଉଅଛି ।

**ବନପର୍ବରେ—**

( ଦ୍ରୌପଦୀ । )

ମତେ ସଭାରେ କୁରୁଏ ଦେଲେ ଅପମାନ ।
କେଶ ଧରି ମୋର ନେଲା ଦୁଷ୍ଟ ଦୁଃଶାସନ ।
ଅଣଚେନ୍ତେ ଚରଣ ମୋର ନ ପଡ଼ଇ ତଳ ।
ଆକର୍ଷି ଶିର ଝୁଣିଲା ଦୁଃଶା । ମୋର ବାଳ ।
ସେହି ଦିନୁ କେଶ ମୋର ନ କଲି ବନ୍ଧନ ।
ସେ ଭୁଜ ଦୁଃଶାର ଉପାଡ଼ିବେ ଭୀମସେନ ।
ତାହାର ରୁଧିରେ ମୋର କେଶ ପଖାଳିବି ।
ତେବେ ମୁଁ କେଶ ବନ୍ଧନ କରିବି କେଶବ ।

ପୃ ୨୦୭ ।

କର୍ଣ୍ଣପର୍ବରେ—ନିର୍ଦ୍ଦୟ କରପେଷ ଅଛଇ ଏ ଶୃଗାଳ
ଅନ୍ତଃପୁରେ ପଶି ଯେ ଧଇଲା ମୋର ବାଳ ।
ଅନ୍ତରୀକ୍ଷେ ଆଣିଲାପେ ଧରି ମୋତେ ବଳେ
ଅନେକେ ଚରଣ ମୋର ନ ଲାଗିଲା ତଳେ ।
ଦ୍ରୌପଦୀର ମୁଖରୁ ଏସନ ବାକ୍ୟ ଶୁଣି
ଗର୍ଜିଣ ଉଠିଲା ଭୀମ ମତ୍ତସିଂହ ଜିଣି ।
ଓଷ୍ଠ ଦନ୍ତ ଚାପି ଗର୍ଜେ ପବନ ଆତ୍ମଜ
ଆକର୍ଷି ଧଇଲା ଦୁଃଶାର ଡାହାଣ ଭୁଜ ।
ତୁଲାଇ ଭୁଜ ଯେ ଆକାଶକୁ ଦେଲା ଫିଙ୍ଗି
ଅନ୍ତରୀକ୍ଷେ ଶେଣପକ୍ଷୀ ଧଇଲା ତା ବେଗି ।
ପୁଣି ବାମଭୁଜ ଭୀମ ଉପାଡ଼ିଲା ବଳେ
ଏ ଭୁଜେ ଧର୍ମକୁ ବସାଇଲୁ ସଭାତଳେ ।
(ସହଦେବ) ତୁ ଯେ ବାସୁଦେବ ପ୍ରଭୁ ଜଗଜ୍ଜନବନ୍ଧୁ
ଏ ବଡ଼ ବିଚିତ୍ର ଦେବ ଜାଣୁ ଜାଣୁ କାନ୍ଦୁ ।
ତୁ ଦେବ ଚେତନା ଯାଇ କରାଅ ତାହାଙ୍କୁ
ଶତଶୃଙ୍ଗ ବାଦ୍ୟକର ଶୁଭୁ ଯେ ଭୀମଙ୍କୁ ।
ଏଣେ ପାଞ୍ଚଜନ୍ୟ ଧରି ଫୁଙ୍କିଲେ ଗୋବିନ୍ଦ
ଶତଶୃଙ୍ଗ ଶତଟଙ୍କ ଉଚ୍ଛେ କଲା ନାଦ ।
ଶତଟଙ୍କଙ୍କୁ ସ୍ମରଣ କଲା ଯହୁଁ ଭୀମ
ଏକୋତ୍ତର ସିଂହର ହୋଇଲା ପରାକ୍ରମ । ପୃ ୩୨
(ଭୀମ) ପାରିଲେ ଏହାକୁ ରକ୍ଷା କର ଦେବଇନ୍ଦ୍ର ।
ସଞ୍ଜୀବନୀ ନାଥ ତୁହି ଅଛୁ ହେ କୃତାନ୍ତ
ପାରିଲେ ଦୁଃଶାସନକୁ ରଖ ଜଗନ୍ନାଥ ।
ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ଇନ୍ଦ୍ର ଅଗ୍ନି ଆଦିକରି
ରଣ ଛଳେ ମିତ୍ର କେହି କରେ ଶତ୍ରୁ ଧରି ।

କାଲଚକ୍ର ପ୍ରାଏକ ବୁଲାଏ ବେନି ଅଖି
ତିନି ଭୁବନ ଲୋକେ କାପିଲେ ତାହା ଦେଖି—
ରେ ରେ ଦୁଃଶା ତୋତେ କେହୁ ନ ପାରିଲେ ରଖି
ପୁଣି କୋପେ ପାତାଳକୁ ଚାହିଁଲା ନିରେଖି ।
ପୁଣି ଚାହିଁ ବୋଲେ ଅରେ ଅରେ କଉରବ
କେ ପାରୁଛ ରକ୍ଷା କର ଦୁଃଶାସନ ଜୀବ । ପୃ ୩୩

(ଅର୍ଜ୍ଜୁନ) ସମସ୍ତ ପ୍ରତିଜ୍ଞା ମୁଁ ସହିଲି ବାସୁଦେବ
ତୋହର ଅବଜ୍ଞା କେ ଦେଖି ବନ୍ଧୁ ସହିବ ।

(କୃଷ୍ଣ) ତାହାକୁ କରୁ ତୁ କୋପ ଅହୋ ଫାଲଗୁନି
ଯାର ନାମେ କମ୍ପମାନ ହୁଏ ସୁର ଜନ । ପୃ ୩୪

(ଭୀମ) ଚଲ କର ଦେଖ ମୋର ଭାଇ ମୁଖ ଗୋଟି
ଗୁଣବନ୍ତ ପୁରୁଷ ଏ ଅଟେ ଧାର୍ତ୍ତରାଷ୍ଟ୍ରୀ—
ମହା ଅନଳ ଭେଦ ଏ ଜାତ ଯାଜ୍ଞସେନୀ ।
ତୁ ଘୋର ପାମର ରେ ଧଇଲୁ ତାର କେଶ
ସଭା ତଳେ ନେଇ ପୁଣି କଲୁ ଯେ ବିବସ୍ତ୍ର ।
ଅନେକ ଭର୍ତ୍ସନା କଲୁ ସତୀ ନଜେ ଅଣି
ଆକର୍ଷି କେଶ ଏଦ୍ୱାର ଝିଙ୍କିଥିଲୁ ପୁଣି ।
ଆଜ ଦୁଃଶାସନ ଉପାଡ଼ିବି ତୋର କର
ପାଞ୍ଚାଳୀର ଶିରେ ନେଇ ଦେବଇଁ ରୁଧିର । ପୃ ୩୫

ଅତ ଅଧିକ ଉଦ୍ଧାରର ପ୍ରୟୋଜନ ନାହିଁ । ଯେଉଁମାନେ ସ୍ୱର୍ଗୀୟ ରାୟ କବିଙ୍କର 'ବେଣୀସଂହାର' ପାଠ କରିଅଛନ୍ତି ସେମାନେ କର୍ଣ୍ଣ ପର୍ବର ଏହି ଅଂଶ ଦେଖିଲେ ମନେ କରିବେ ଯେ, ପ୍ରାୟ ଏକା ଭାଷା, ଏକା ଭାବ ଏବଂ ଏକ ଛନ୍ଦ ।

କେବଳ ପ୍ରଭେଦ ଏହି ଯେ ମଧ୍ୟେ ସ୍ୱୟଂ କବିଙ୍କ ଭାବ ସୁରୁଚିସମ୍ପନ୍ନ ; ଭାଷା ମାର୍ଜିତ ଏବଂ ଛନ୍ଦପଦୋଷ ବର୍ଜିତ ।

ଧର୍ମାଗ୍ରେ ତୁମ୍ଭେ ବର୍ତ୍ତ ସର୍ବକାଳେ ପୁଣ ।
ଭୀମକୁ ବସାଇ ଖୁଆଇଲ୍ ବିଷ ଲଡୁ
ଖାଇ ବିଷ ମରିଲା ତୁମ୍ଭର ଧର୍ମ ପୋଡୁ ।
ଯାବତ କାଳରେ ତୁମ୍ଭେ ଚଳ ଧର୍ମ ବାଟେ
ଘର ଜଳି କଉ ଗୁଅଘୃତ ଛଣପଟେ ।
ବାକଲେ ପଶିଲେ ଯେ ବିକଳରେ ପଞ୍ଚଭାଇ
ଏମାନ ତୁମ୍ଭର କଣ ଅଧର୍ମ ନୁହଇ ?
ଚଉଦ ବରଷ ଅଟେ ସୁଭଦ୍ରାର ସୂନୁ
ନ ଜାଣି ସମରେ ଯେ ପଶିଲା ଅଭିମନ୍ୟୁ ।
ଧର୍ମଯୁଦ୍ଧେ ମାରି ନ ପାରିଲ, ଯେତେବେଳ
ବେଢ଼ି କରି ମାରି ବୋଲି ସର୍ବେ କଲ ଗୋଳ ।

କ ; ପ ପୃ ୪୯ ।

ଇତ୍ୟାଦି ପଂକ୍ତି କଣ୍ଠସ୍ୱର ଆଭାସ ଭକ୍ତ କବି ମଧୁସୂଦନଙ୍କ 'କର୍ଣ୍ଣବଧରେ' ଲକ୍ଷିତ ହୁଏ ନାହିଁ କି ?

ସ୍ୱର୍ଗାରୋହଣ ପର୍ବରେ—

ଅନେକ କଷ୍ଟରେ ପ୍ରଜା କରିବେ ଯେ କୃଷି
ନାନା ଫାନ୍ଦ ପାତି ରାଜା ହେବେ ମିଥ୍ୟାଭାଷୀ ।
ପ୍ରଜାଠାରୁ ସବୁ ତଣ୍ଡି ନେବେ ରାଜାମାନେ
ମହା ଦୁଃଖ ପାଇ କଷ୍ଟୀ ହେବେ ପ୍ରଜାମାନେ ।
ବ୍ରାହ୍ମଣ ଦେବତାଆଦି ପୂଜ୍ୟ ଯେ ପଦାର୍ଥ
ରାଜା ଦୋଷ ହେତୁ ସର୍ବେ ହୋଇବେ ଅନାଥ ।
ଶୂଦ୍ରଙ୍କୁ ବ୍ରାହ୍ମଣେ ଯେ ମାରିବେ ତଳହସ୍ତେ
ବକ ମତ ଦେଖିଣ ଯେ ଅନ୍ୟ ଭାବ ମତେ ।
କୁଳାଚାର ଛାଡ଼ି ଦ୍ୱିଜେ ହେବେ ଅନାଚାରୀ

ରାଜ ସେବା କରିବେ ସେ ଯେସନ ବେଗାରି । (୧)
ଏରୂପର ଅନାଚାର ବ୍ରାହ୍ମଣେ କରିବେ
ବ୍ରାହ୍ମଣ ମାଇଲେ କେହି ହତ୍ୟା ନ ଘେନିବେ ।
ବ୍ରାହ୍ମଣ ଚଣ୍ଡାଳ ଅଦ୍ଧ ବସିବେ ଏକଠେ
ନୀଚଲୋକେ ପୂଜିବେ ସେ ମନ୍ଦିରର ଅର୍ଥେ ।
ପରଧନ ଚୋରି କରି ମରିବେ ଯେ ପ୍ରାଣୀ
ଅବିଚାର କରି ରାଜା ପକାଇବେ ହାଣି ।
ସବୁଅଛେ ଗୋଲମାଲ ହେବ ଏକଯୋଗେ
ଅନାଚେରି ହେବେ ଲୋକେ ଥାଇଣ ଅମାର୍ଗେ ।
ଅନେକ ଅନ୍ୟାୟ ଦେବ ହେବ କଳିଯୁଗେ

ପୃ ୧୧ । ୧୨

ସହଦେବ ମୁଖ ନିର୍ଗତ ଏହି ଉକ୍ତିଗୁଡ଼ିକ ସ୍ୱର୍ଗୀୟ କବିବରଙ୍କ 'ମହାଯାତ୍ରାରେ' ଅଗ୍ନିମୁଖୋଦ୍ଗୀର୍ଣ୍ଣ ଭବିଷ୍ୟଦ୍ ବାଣୀର ଅଗ୍ରଜା ନୁହେ କି ? ଅବଶ୍ୟ ସେଥିରେ ସ୍ୱୟଂ କବିଙ୍କ ପ୍ରତିଭାର ପ୍ରଭାବ ଯଥେଷ୍ଟ ଦେଖାଯାଇଅଛି, ତଥାପି ତାହା ଯେ ଏତଦ୍ଦୃଷ୍ଟିରେ ଉଦ୍ଭାବିତ ଏବା କଣ୍ଠରେ ଉଚ୍ଚାରଣ କରିବାକୁ ବୋଧହୁଏ କେହି କୁଣ୍ଠିତ ହେବେ ନାହିଁ ।

ଉପମା ଭାବବିଶଦୀକରଣର ଗୋଟିଏ ପ୍ରଧାନ ସାଧନ । ଅନେକ ସ୍ଥଳରେ କବିଙ୍କର ଉପମାଗୁଡ଼ିକ ବଡ଼ ସୁସଙ୍ଗତ । ଯୁଦ୍ଧବର୍ଣ୍ଣନାରେ ଯେଉଁ ଉପମାବଳୀର ଅବତାରଣା ହୋଇଅଛି ତନ୍ମଧ୍ୟରୁ ଅଧିକାଂଶ ପ୍ରାଚୀନ । କିନ୍ତୁ ଅନେକଙ୍କ ପ୍ରତିଭାବାନ୍

(୧) 'ବେଗାରି' ଶବ୍ଦ ଇଂରେଜଙ୍କଠାରୁ ଆଗତ ଏବଂ ଅଧୁନାତନ, ଉକ୍ତ ଛାଂଦରୁ ଏହି ପଂକ୍ତି ଏବଂ ଅନ୍ୟ କେତୋଟି ପଂକ୍ତି ଦେଖି ଅନୁମାନ ହୁଏ ଏହି ଅଂଶ ପଶ୍ଚାତ୍ ପ୍ରକ୍ଷିପ୍ତ । ଯେଉଁ ବ୍ୟକ୍ତି ଏ ସାହସ କରିଛନ୍ତି, ସେ ଯେ ଶବ୍ଦପ୍ରୟୋଗରେ ନିପୁଣ ଏଥିରେ ସନ୍ଦେହ ନାହିଁ ।

ଭବ ପ୍ରାଚୀନ ପଦ୍ଧତି ଉପେକ୍ଷା ନ କରି ଆପଣା ଅବେକ୍ଷଣ ଅନୁସାରେ ନାନା ଉପମାସୃଷ୍ଟି କରିଅଛନ୍ତି । ସେ ସମସ୍ତ ପ୍ରଦର୍ଶନ କରିବାର ସମ୍ଭାବନା ଏବଂ ସ୍ଥାନ ଏଠାରେ ନାହିଁ । ତଥାପି ଦୁଇ ତିନୋଟି ମାତ୍ର ଆକାଙ୍କ୍ଷା ନିବୃତ୍ତି ପାଇଁ ଉଦ୍ଧୃତ ହେଲା ।

୧—ଖଗବର ଚଞ୍ଚୁପ୍ରାଏ ନାସାର ଯେ ଶୋଭା
ଗୁଞ୍ଜାଫଳ ହସି ଜ୍ୱଳନ୍ତି ବେଢ଼ା ଡୋଳା
ରଙ୍ଗ ଅଧରେ ଲାଳ ପ୍ରାଏ ତାଳପାର କାନ୍ତି
ଘଟଣ ଯୋଡ଼ାଳା ଜିଣି ଅଙ୍ଗୁଷ୍ଠି ଦିଶନ୍ତି । ବ, ପ, ପୁ ୭
ସେବତୀ ପାଖୁଡ଼ା ପ୍ରାଏ ତହିଁ କରରୁହ ।

ଯୁଦ୍ଧରେ ଶରଘାତ ଏବଂ ଶର ଯୋଗେ ଶିରଃପାତାଦିର ବର୍ଣ୍ଣନାରେ କବିଙ୍କର ଉପମା ଯଥ ଯଥ ହୋଇଅଛି ।

ଯଥା ୧— ଶର ମାରନ୍ତି ଯେସନେ ବରଷଇ ପାଣି
ଝଲକଇ ଅସ୍ତ୍ର ବିଜୁଳିର ତେଜ ଜିଣି ।
୨— ସମସ୍ତଙ୍କ ଅଙ୍ଗରୁ ରୁଧିର ବୃଷ୍ଟି ହେଲା
ପଳାଶ ଗଛ କି ଫୁଲେ ମଣ୍ଡିତ ହୋଇଲା ।
୩— ଯେସନେ ତାଳମଞ୍ଜି ବୁଣଇ କୃଷିକାରୀ
ପଡ଼ନ୍ତି ପାଦାନ୍ତ୍ରବଳ ପକ୍ଷୀ ନ ପାରି । ଦ୍ରୋ, ପ
୪— ଯେସନେ କଦଳୀ ବନ ପଡ଼େ ବାତାଘାତେ
ଏକ ଉପରେ ଅନେକ ପଡ଼େ ଶରପାତେ । ସ, ପ
୫— ମହାବାତେ ଯେସନ ପକ୍ୱଫଳ ଝଡ଼ନ୍ତି
ଏକାବେଳକେ ବହୁ ପତନ ଲୋଟନ୍ତି ।
ଗଭୀର ଜଳରେ ଯେଉଁ ପରି ଭାସେ ଭେଳା
ଗଜ ଅଶ୍ୱ, ରଥ ରକ୍ତେ ତଥା ମେଳାମେଳା ।
—ଦ୍ରୋ, ପ ।

ଶେଷୋକ୍ତ ଉପମାଟି ସମ୍ପୂ କବିଙ୍କର ନିମ୍ନୋକ୍ତ ଉପମା

ଅପେକ୍ଷା ଅଧିକ ସଙ୍ଗତ ଏବଂ ସୁନ୍ଦର ନୁହେ କି ?

ଝଡ଼ିଲା ଯବନ ମୁଣ୍ଡ ସେ କୃପାଣ ସ୍ରୋତେ
ଶତ ଶତ ପକ୍ୱପଣ୍ଡ ଶୀତାନ୍ତେ ଯେସନ,
କୃଷିବଳ ଦାତେ ଅବା ପକ୍ୱଶସ୍ୟାବଳୀ

ମହାଯାତ୍ରା ୭ମ ସର୍ଗ ।

ଅନ୍ୟ ଉପମା, -- ବଯାଭସ୍ମେ ପକ୍ଷୀଏ ପଳାନ୍ତି ଯେହ୍ନେ ଡରେ
କେ ରହି ନ ପାରେ ନନ୍ଦଘୋଷର ଛାମୁରେ ।
ବଦନ୍ତି ଅଗସ୍ତି ଯେଉଁପରି କୃଷିକାରୀ,
ବଳଦ ହଜାଇ ଏଣେ ତେଣେ ଖୋଜିବୁଲି
ଭୀଷ୍ମଙ୍କ ଅଭାବେ ରାଜା ହେଲେ ସେହିପରି ।

ଦ୍ରୋ, ପ ।

ଶୂଲ୍ୟଶିର ପ୍ରାୟେ ତୁ ହୋଇଲୁ ଭୀମସେନ ।
ଗୁଣଗାଢ଼ କେବଳ ବହିଲୁ ଅବଗୁଣ । ଅଶ୍ୱ, ପ ।

ବୀର ଚରିତ୍ର ବର୍ଣ୍ଣନରେ କବି ଏକପ୍ରକାରେ ସିଦ୍ଧ ହସ୍ତ ।
ବର୍ଣ୍ଣନା ଅଲୌକିକ ଏବଂ ଅତିଶୟୋକ୍ତି ବହୁଳ ହେଲେହେଁ
କୌଣସିଠାରେ ସେ ବୀରମାନଙ୍କର ବୀର ଧର୍ମର ଖର୍ବତା
ସମ୍ପାଦନ କରି ନାହାନ୍ତି । ଯେଉଁଠାରେ

ଚରିତ୍ର ଚିତ୍ରଣ ।

କେବଳ ବୀରତ୍ୱର କଥା ନାହିଁ ସେ
ସ୍ଥଳର ଚରିତ୍ର ଉଲ୍ଲେଖରେ କବି କମ୍ପିତ, ଅସମର୍ଥ ହୋଇ-
ଅଛନ୍ତି । ତେଣୁ ସେ ଧର୍ମବୀର ଯୁଧିଷ୍ଠିରଙ୍କର ଧର୍ମପ୍ରାଣତା,
ଗାମ୍ଭୀର୍ଯ୍ୟ ଓ ସତ୍ୟନିଷ୍ଠତା ସର୍ବତ୍ର ଅକ୍ଷୁଣ୍ଣ ରଖି ପାରି
ନାହାନ୍ତି । ଶଲ୍ୟପର୍ବରେ ଯୁଧିଷ୍ଠିରଙ୍କର ବୀରତ୍ୱ ପ୍ରଶସ୍ତ ଭାବରେ
ଚିତ୍ରିତ ହୋଇଥିଲେହେଁ ବିରାଟ ପର୍ବରେ ଅଜ୍ଞାତ ବାସ-
କାଳୀନ ତାଙ୍କର ଯେଉଁ ଅମ୍ଭରିତ୍ର ଚିତ୍ରଣ ହୋଇ-
ଅଛି, ସେଥିରୁ ତାହାଙ୍କୁ ମିଥ୍ୟାବାଦୀ ବୋଲି ପ୍ରତୀତ ହୁଏ ।

କିନ୍ତୁ ମୂଳମହାଭାରତରେ ଏପରି ପରିଚୟ ଦିଆ ନାହିଁ । ତତ୍‌ପରବର୍ତ୍ତୀ କୃଷ୍ଣସିଂହ ମଧ୍ୟ ଏ ସ୍ଥଳରେ ସାବଧାନଥାଇ ଦ୍ୱ୍ୟର୍ଥ ବ୍ୟଞ୍ଜକ ଶବ୍ଦଦ୍ୱାରା ସତ୍ୟନିଷ୍ଠତା ସୁଗୁପ୍ତ ରଖିଅଛନ୍ତି । କବିଙ୍କର ଭୀମ କେବଳ ମହାବଳଶାଳୀ ନୁହନ୍ତି, ଅତି ଉଦ୍ଧତ, ଚପଳ ଏବଂ ଅଲୌକିକଶକ୍ତିସମ୍ପନ୍ନ । ଜନ୍ମ ଅବସ୍ଥାରେ ସୁଦ୍ଧା ସେହି ଔଦ୍ଧତ୍ୟ ଓ ଚପଳତା ବାଲକୋଚିତ ରହିଅଛି । ଶୌର୍ଯ୍ୟ ଏବଂ ଔଦାର୍ଯ୍ୟରେ କବି ମହାବୀର କର୍ଣ୍ଣାର୍ଜ୍ଜୁନଙ୍କୁ ଆଦର୍ଶ ରଖି ଅଛନ୍ତି । ଏ ଉଭୟଙ୍କ ଚରିତ୍ରକୁ ଉନ୍ନତ କରିବାରେ କବି ଯଥେଷ୍ଟ ପ୍ରୟାସ ପାଇଛନ୍ତି । ପ୍ରତିସ୍ଥଳରେ ମହାବୀର ଅର୍ଜ୍ଜୁନଙ୍କର ଶୌର୍ଯ୍ୟସହ ଔଦାର୍ଯ୍ୟ ଅତି ଉତ୍କୃଷ୍ଟ ବର୍ଣ୍ଣରେ ରଞ୍ଜିତ । କବିଙ୍କର ନକୁଳ ମଧ୍ୟ ମହାବୀର ଏବଂ ସହଦେବ ସୁବୁଦ୍ଧି-ସମ୍ପନ୍ନ ଓ ରଣକୁଶଳ । ଏହି ପଞ୍ଚପାଣ୍ଡବଙ୍କ ଚରିତ୍ର ମଧ୍ୟରୁ ଭୀମଙ୍କ ଚରିତ୍ରରେ ଅଲୌକିକତା ଏବଂ ଅତିଶୟୋକ୍ତିର ମାତ୍ରା ସର୍ବାପେକ୍ଷା ଅଧିକ । ପାଣ୍ଡବପକ୍ଷପାତୀ ଯଦୁବଂଶାବତଂସ ଶ୍ରୀକୃଷ୍ଣଙ୍କୁ କବି ଯେ ସର୍ବତ୍ର କେବଳ ଅଲୌକିକଶକ୍ତିଶାଳୀ ଏବଂ ଦେବତାରୂପେ ଚିତ୍ରିତ କରିଅଛନ୍ତି, ତାହା ନୁହେଁ, ଅନେକ ସ୍ଥଳରେ ସେ ତାହାଙ୍କୁ ଅତି କୁଟିଳ, ଶ୍ଳାଘାନ୍ୱିତ ଏବଂ କୁତର୍କୀ ପୁରୁଷରୂପରେ ବର୍ଣ୍ଣାୟମାନ କରିଅଛନ୍ତି । ସ୍ଥାନେ କୃଷ୍ଣଙ୍କର ମହିମା କିପରି ଖର୍ବୀକୃତ ଏବଂ ହୀନବର୍ଣ୍ଣରେ ଚିତ୍ରିତ ହୋଇଅଛି, ତାହାର ଗୋଟିଏ ଦୃଷ୍ଟାନ୍ତ ଦେଉଅଛୁଁ ।

ଦ୍ରୋଣବଧ ପର୍ବରେ କବି ଲେଖିଅଛନ୍ତି ;—

ଧୃଷ୍ଟଦ୍ୟୁମ୍ନ ଥିଲା ଯୁଧିଷ୍ଠିଙ୍କ ପଛକତି ।
ଜସୃନଠାର ତାହାକୁ ଦେଲେକ ଶ୍ରୀପତି ।
ପିତା ଶତ୍ରୁ ଅଟଇ ଗୁରୁ ଦ୍ରୋଣ ।
କିସ ପାଞ୍ଚ ଏହାକୁ କୃପାଣ ଦେଇନ ହାଣ । ପୃ ୧୫୬

କିନ୍ତୁ ମୂଳ ମହାଭାରତରେ ଏହା ଅଛି ଯେ ଅଚାର୍ଯ୍ୟ ଦ୍ରୋଣ ଯୁଧିଷ୍ଠିରଙ୍କ ବାକ୍ୟରେ ଶସ୍ତ୍ର ତ୍ୟାଗ ପୂର୍ବକ ରଥରେ ଯୋଗାସୀନ ହୁଅନ୍ତେ ଧୃଷ୍ଟଦ୍ୟୁମ୍ନ ଏହି ଛିଦ୍ର ଦର୍ଶନରେ ସଶର* ହୋଇ ତାହାଙ୍କୁ ଆକ୍ରମଣ କଲା । ଦ୍ରୋଣ ଯୋଗସ୍ଥ ଥାଇ ଜ୍ୟୋତିର୍ମୟ ବ୍ରହ୍ମ ମଧ୍ୟରେ ଅପ୍ରକାଶରେ ଲୀନ ହୋଇଗଲେ । ଧୃଷ୍ଟଦ୍ୟୁମ୍ନ ତାଙ୍କର ସେହି ମୃତ ଦେହର ଶିରଚ୍ଛେଦନ ମାତ୍ର କରି ଆଣିଥିଲା । ସେଥିରେ କୃଷ୍ଣଙ୍କର କୌଣସି କଥା ନାହିଁ । ଏହା ତୁଳନାରେ କବିଙ୍କର ଏ ସ୍ଥଳର ଚିତ୍ର ଅତି ଜଘନ୍ୟ ହୋଇ ନାହିଁ କି ? ଏ ସ୍ଥଳରେ ଗୁରୁହନ୍ତା ଧୃଷ୍ଟଦ୍ୟୁମ୍ନ ପ୍ରତି ଅର୍ଜ୍ଜୁନଙ୍କର ମହାକୋପ ଅବଶ୍ୟ ତାହାଙ୍କର ଚରିତ୍ରର ଉପଯୁକ୍ତ ହୋଇଅଛି । କିନ୍ତୁ କୃଷ୍ଣ ଚରିତ୍ରକୁ କବି ନାନା ସ୍ଥାନରେ ଅତି ହୀନ କରି ପକାଇ ଅଛନ୍ତି । ଉକ୍ତ ପର୍ବରେ କବି ମହାବୀର ବାଳକ ଅଭିମନ୍ୟୁର ବୀରତ୍ୱକୁ ପ୍ରଶସ୍ତତର ବର୍ଣ୍ଣରେ ଚିତ୍ରିତ କରି ଅଛନ୍ତି । ଏଥିରେ ଅବଶ୍ୟ କବି କୃତୀ । କବିଙ୍କର ଅଶ୍ୱତ୍ଥାମା ମହାବୀର ଏବଂ ରଣବିଶାରଦ ସତ୍ୟ, କିନ୍ତୁ ନିରତିଶୟ ଚଣ୍ଡପ୍ରକୃତି । ଏହି ସୀମାତୀତ ଉଗ୍ରତା ବ୍ରାହ୍ମଣୋଚିତ ହୋଇ ନାହିଁ । ଦୁର୍ଯ୍ୟୋଧନ ଦୁଃଶାସନାଦିଙ୍କର ଚିତ୍ର ଅସଙ୍ଗତ ହୋଇ ନାହିଁ । ରାକ୍ଷସ ରାକ୍ଷସୀ ଚିତ୍ରରେ

---

* ଉତ୍ସୃଜ୍ୟ ତୁ ରଣେ ଶସ୍ତ୍ରଂ ରଥୋପସ୍ଥେ ନିବିଶ୍ୟ ଚ
ଅଭୟଂ ସର୍ବଭୂତାନାଂ ପ୍ରଦଦୌ ଯୋଗମାସ୍ଥିବାନ୍ ।
ତସ୍ୟ ତଚ୍ଛିଦ୍ରମାଜ୍ଞାୟ ଧୃଷ୍ଟଦ୍ୟୁମ୍ନଃ ପ୍ରତାପବାନ୍
ସଶରଂ ତଦ୍ଧନୁର୍ଘୋରଂ ସନ୍ନ୍ୟସ୍ୟାଥ ରଥେ ତତଃ
ଖଡ୍ଗୀ ରଥାଦବପ୍ଲୁତ୍ୟ ସହସା ଦ୍ରୋଣମଭ୍ୟୟାତ୍ ।
ଧିକ୍କୃତଃ ପାର୍ଥିବୈସ୍ତତ୍ର ସର୍ବଭୂତୈଃ ପରାମୃଶତ୍
ତସ୍ୟ ମୂର୍ଦ୍ଧାନ ମାଲମ୍ବ୍ୟ ଗତସତ୍ତ୍ୱସ୍ୟ ଦେହିନଃ ।

ଦ୍ରୋ ; ପ ; ୧୦୧

କବିଙ୍କର ହସ୍ତ ଯେପରି ଅଭ୍ୟସ୍ତ ସେପରି ଅନ୍ୟର ନୁହେ । ନାରୀ ଚରିତ୍ର ଉନ୍ମୀଳନରେ କବିଙ୍କର ଲେଖନୀ ଏକାନ୍ତ ମଳିନ (୧) । କବି କୁନ୍ତୀ ଦ୍ରୌପଦୀ ସୁଭଦ୍ରା ସତ୍ୟଭାମା ପ୍ରଭୃତିଙ୍କୁ ଅତି ସାମାନ୍ୟ ନାରୀରୂପରେ ପ୍ରଦର୍ଶନ କରିଅଛନ୍ତି । ମଧ୍ୟପର୍ବ ବର୍ଣ୍ଣିତ ସୁଭଦ୍ରା ଓ ସତ୍ୟଭାମାର କଥା ପ୍ରସଙ୍ଗାଦି ବୀରାଙ୍ଗନାର ଉପଯୋଗୀ ହୋଇ ନାହିଁ, ବରଂ ତାହା ଅତି ସାମାନ୍ୟ ନାରୀ ସୁଲଭ । କବିଙ୍କର କୁନ୍ତୀ କ୍ଷତ୍ରିୟା ଏବଂ ବୀର ପ୍ରସବିନୀ ସତ୍ୟ କିନ୍ତୁ, ସ୍ଥାନେ୨ କବି ତାହାଙ୍କୁ ନୀଚାଶୟା କରି ସମସ୍ତ ଓଜଗାମ୍ଭୀର୍ଯ୍ୟ ନଷ୍ଟ କରି ପକାଇଅଛନ୍ତି । କବିଙ୍କର ଦ୍ରୌପଦୀ ପତିବଶମ୍ବଦା ହେଲେହେଁ ବଡ଼ ଉଗ୍ରସ୍ୱଭାବା । ବିରାଟପର୍ବରେ ତାଙ୍କର କର୍କଶଭାଷିଣୀଭାବ ଏବଂ ବେଣୀସଂହାର ସ୍ଥଳରେ ରାକ୍ଷସୀରୂପ ଦେଖିଲେ ଦ୍ରୌପଦୀଙ୍କ ପ୍ରତି ଘୃଣାର ଉଦ୍ରେକ ହୁଏ । ତାହା ବ୍ୟତୀତ କବି ଦ୍ରୌପଦୀଙ୍କୁ ସ୍ଥାନେ୨ ପରପୁରୁଷରତା କାମୁକା ସ୍ତ୍ରୀରୂପେ (୨) ବର୍ଣ୍ଣନ କରିବାକୁ ଛାଡ଼ି ନାହାନ୍ତି । ଏପ୍ରକାର ହୀନ ଅଦର୍ଶ ଦ୍ୱାରା ସମାଜରେ କଳଙ୍କ ବୃଦ୍ଧି ଶଙ୍କନୀୟ ହେଲେହେଁ ଅଧମ ସାହିତ୍ୟର ଲକ୍ଷଣ ଦୃଷ୍ଟିରେ ଉପେକ୍ଷଣୀୟ ନୁହେ । ବରଂ ଅତି ଆଦରର ସାମଗ୍ରୀ । ତେବେ ପାଠକ ସମାଜଙ୍କ ନିକଟରେ ବକ୍ତବ୍ୟ

---

(୧) ଏ ଦେଶରେ ଅବରୁଦ୍ଧ ଓ ଅଶିକ୍ଷିତ ନାରୀ ସମାଜର ଯେପରି ଶୋଚନୀୟ ଅବସ୍ଥା, ସେଥିରେ କବି ସେ ଚରିତ୍ରୋତ୍କର୍ଷ ବିଧାନ କରି ପାରନ୍ତେ, ଏହା ସମ୍ଭବ ନୁହେ ।

(୨) ଦ୍ରୌପଦୀଙ୍କର ସତ୍ୟ ପ୍ରକାଶ ।—

* * ଯେ ପୁରୁଷ ସଦ ଭ୍ରାତା ପୁତ୍ର ଅବା ହେଉ ।
ସୁବେଶ ପୁରୁଷେ ଦେଖି ଚିତ୍ତକୁ ବଳାଉଁ ।
ଏ ମୋହର ଯଦ୍ୟପି ଅଛନ୍ତି ପଞ୍ଚପତି ।
ମନ ଚଳ ଥାନ୍ତେ ମୋହର କର୍ଣ୍ଣେ ବଳେ ମତି ॥ ବ; ପ; ।

ଏହି ଯେ, ସେମାନେ ଯଦି ଉଲ୍ଲିଖିତ ସ୍ଥଳମନ୍ତବ୍ୟରେ ବିଶ୍ୱାସ ସ୍ଥାପନ କରି ପାଠ କରନ୍ତି ତାହା ହେଲେ ଏ ଭାରତ ଗ୍ରନ୍ଥ ତେତେ ଭାବବନ୍ତ ବୋଧ ହେବ ନାହିଁ ।

ଉପସଂହାର ସ୍ଥଳରେ ଏତିକି ମାତ୍ର କହିବାକୁ ହେବ ଯେ, ଏହି ଶାରଳାଦାସୀୟ ମହାଭାରତ ପ୍ରାଚୀନ ଉତ୍କଳସାହିତ୍ୟର ବିପୁଳସମ୍ପଦ । ଏଥିରେ ମହାଭାରତୀୟ ମହା ବିଷୟ ବ୍ୟତୀତ ଉତ୍କଳର କେତେକ ମୌଳିକ ତତ୍ୱ ସଂଯୋଜିତ ଅଛି । ସେ ଗୁଡ଼ିକୁ ଅବଲମ୍ବନ କରି ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ପ୍ରଣୟନ କରା ଯାଇ ପାରେ । ଆଧୁନିକ ସାହିତ୍ୟସେବିମାନଙ୍କର ଉପଜୀବ୍ୟ ବିଷୟ ମଧ୍ୟ ଏଥିରେ ଅପ୍ରତୁଳ ନୁହେ । ଅତଏବ ଆଧୁନିକ ଶିକ୍ଷିତ ସମାଜକୁ ଏହା ଅନୁରୋଧ କରିବା ଅସଙ୍ଗତ ହେବ ନାହିଁ, ଯେଉଁମାନେ ଆଦି କବି ଶାରଳା ଦାସଙ୍କର ସମାଦର କରନ୍ତି, ସେମାନେ କବିଙ୍କର ଏହି ମହାଗ୍ରନ୍ଥ ଅମୂଳ ପାଠ କରି ତନ୍ମଧ୍ୟରୁ ଉତ୍କୃଷ୍ଟ ଅଂଶମାନ ଗ୍ରହଣପୂର୍ବକ ଆଧୁନିକ ରୁଚି ସମ୍ମତ ଗ୍ରନ୍ଥମାନ ପ୍ରଣୟନ କରନ୍ତୁ, ପକ୍ଷାନ୍ତରେ ଯେଉଁମାନେ ଅନାଦର କରନ୍ତି, ସେମାନେ ମଧ୍ୟ ମାର୍ଜିତ ରୁଚିର ପୁସ୍ତକ ପ୍ରଣୟନ ଦ୍ୱାରା ଏଥିର ଅପକର୍ଷ ପ୍ରଦର୍ଶନ କରି ଅନ୍ତସ୍ତର୍ପଣ ସମ୍ପାଦନ କରନ୍ତୁ । ଭଗବାନଙ୍କ କୃପାରୁ ଅସ୍ମମାନଙ୍କର ଏହି କାମନା ପୂର୍ଣ୍ଣତା ଲାଭ କରୁ । ଶ୍ରୀ ଶୁଭମସ୍ତୁ ।



